

ଶ୍ରୀ ମା

# କେତେକ ପ୍ରଶ୍ନର ଉତ୍ତର

"କେତେକ ପ୍ରଶ୍ନର ଉତ୍ତର" ଇଂରାଜୀରେ "Some Answers from The Mother" ନାମକ ସଙ୍କଳିତ ପୁସ୍ତକର ଓଡ଼ିଆ ଅନୁବାଦ । ଏହି ଉତ୍ତରଗୁଡ଼ିକ ଶ୍ରୀମା'ଙ୍କର ଜଣେ ଶିଷ୍ୟଙ୍କ ସହିତ ୧୯୩୩ ରୁ ୧୯୪୯ ସାଲ ମଧ୍ୟରେ ହୋଇଥିବା ସଦାଳାପ ମାତ୍ର । ଏଥିରୁ ଅଧିକାଂଶ ପ୍ରଶ୍ନୋତ୍ତର ପ୍ରଥମ ଛଅବର୍ଷ ମଧ୍ୟରେ ହୋଇଥିଲା । ଏହି ପୁସ୍ତକରେ ପ୍ରତ୍ୟେକ ଉତ୍ତର ପୂର୍ବରୁ ପ୍ରଶ୍ନ ଦିଆ ନ ଯାଇ, ବୁଝିବା ପାଇଁ ଯେଉଁଠି ଆବଶ୍ୟକ କେବଳ ସେହିଠାରେହିଁ ଦିଆଯାଇଛି । ସାଧନା ଦୃଷ୍ଟିରୁ ପୁସ୍ତକଟି ଖୁବ୍ ଉପାଦେୟ, ଏପରିକି ସାଧାରଣ ପାଠକ, ଗୃହୀ ଏବଂ ପଣ୍ଡିତ ବ୍ୟକ୍ତିମାନଙ୍କ ପକ୍ଷେ ପୁସ୍ତକଟି ପାଠକରିବା ନିଶ୍ଚୟ ଫଳପ୍ରଦ ହେବ ।

—ପ୍ରକାଶକ

ପ୍ରଥମ ସଂସ୍କରଣ—ସେପ୍‌ଟେମ୍ବର, ୧୯୬୫



ପ୍ରକାଶକ—ନବଜ୍ୟୋତି କାର୍ଯ୍ୟାଳୟ
ଶ୍ରୀଅରବିନ୍ଦ ଆଶ୍ରମ, ପଣ୍ଡିଚେରୀ-୨

ମୁଦ୍ରାକର—ଶ୍ରୀ ଅମିୟରଞ୍ଜନ ଗାଙ୍ଗୁଲି
ଶ୍ରୀଅରବିନ୍ଦ ଆଶ୍ରମ ପ୍ରେସ୍, ପଣ୍ଡିଚେରୀ-୨

ମୂଲ୍ୟ : ଦୁଇଟଙ୍କା

636/8/65/2,000.

# କେତେକ ପ୍ରଶ୍ନର ଉତ୍ତର

## ( ୧ )

ପ୍ରଶ୍ନ—ମୋର ଆଶା ଏବଂ ବିଶ୍ୱାସ ଆପଣଙ୍କର କାର୍ଯ୍ୟ କୌଣସି ମନୁଷ୍ୟ ଉପରେ ନିର୍ଭର କରେ ନାହିଁ ।

ଉତ୍ତର—ନାଁ, ତାହା କଦାପି କୌଣସି ମନୁଷ୍ୟ ଉପରେ ନିର୍ଭର କରେ ନାହିଁ । ଯାହା କିଛି ଘଟିବାର କଥା ତାହା ସମସ୍ତ ବାଧାବିଘ୍ନ ସତ୍ତ୍ୱେ ନିଶ୍ଚୟହିଁ ସାଧିତ ହେବ ।

***

ପ୍ରଶ୍ନ—ମୋ ନିଜର ଇଚ୍ଛାଶକ୍ତିକୁ ଆପଣଙ୍କ ଇଚ୍ଛାଶକ୍ତି ସହିତ ଏକୀଭୂତ କରିଦେବାର କ'ଣ କୌଣସି ଉପାୟ ନାହିଁ ? ବୋଧହୁଏ ଆପଣଙ୍କର କୌଣସି ବିଶିଷ୍ଟ ଇଚ୍ଛା ନାହିଁ, କାରଣ ଆପଣଙ୍କର କୌଣସି ବସ୍ତୁ ଅପ୍ରାପ୍ୟ ନାହିଁ ।

ଉତ୍ତର—ମୁଁ କ'ଣ ବୁଝେ ଅଥବା ଏପରି କୁହାଯାଇ ପାରେ କି
ଭଗବତ ଇଚ୍ଛା କ'ଣ, ତାହା ମୁଁ ଖୁବ୍ ଭଲଭାବରେ ଜାଣେ
ଏବଂ ସମୟ ଆସିଲେ ତାହା ନିଶ୍ଚୟ ବିଜୟ ଲାଭ କରିବ ।

⁂

ଆମ୍ଭେମାନେ ଏ ପୃଥିବୀ ପୃଷ୍ଠରେ ଯାହା ନେଇଆସିବାକୁ ଚାହୁଁଛୁ ତାକୁ କୌଣସି ବିପ୍ଳବ ବୋଲି କୁହାଯାଇ ପାରିବ ନାହିଁ ଯଦିଓ ଏହା ଏକ ଅଦୃଷ୍ଟପୂର୍ବ ଅତି ମହାନ୍ ଓ ଅପରୂପ ପରିବର୍ତ୍ତନ ହେବ । ତଥାପି, ଏହାକୁ ସେହିସବୁ ରକ୍ତରଞ୍ଜିତ ବିପ୍ଳବ ସହିତ କେବେ ବି ତୁଳନା କରିଯାଇ ପାରିବ ନାହିଁ ଯାହା ବ୍ୟର୍ଥରେ ଦେଶକୁ ପୁରାପୁରି ନଷ୍ଟବିନଷ୍ଟ କରିଦିଏ ଅଥଚ ଶେଷରେ କୌଣସି ମହାନ୍ ପରିବର୍ତ୍ତନ ମଧ୍ୟ ଆଣିପାରେ ନାହିଁ କାରଣ ଏହା ମନୁଷ୍ୟକୁ ପୂର୍ବରୁ ସେ ଯେପରି ମିଥ୍ୟାବାଦୀ, ଅଜ୍ଞାନୀ ଓ ଅହଂକାରୀ ଥିଲା ସେହିପରି ଛାଡ଼ିଯାଏ ।

⁂

ପ୍ରଶ୍ନ— ମୋର ବିଶ୍ୱାସ ଏପରି ଦିନ ଆସିବ ଯେତେବେଳେ ଆମେ
ଭଗବାନଙ୍କୁ ଏକବାରେ ସ୍ୱାଭାବିକରୂପେ ଦେଖିପାରିବୁ—
ଯେପରିକି ଆମେ ପାର୍ଥିବ ପଦାର୍ଥକୁ ଦେଖୁ । ଆଉ ମଧ୍ୟ
"ଭଗବାନ ସର୍ବତ୍ର ବିଦ୍ୟମାନ" ଏହା ଘୋଷଣା କରିବାର
କୌଣସି ଆବଶ୍ୟକ ହେବ ନାହିଁ—କାରଣ ଏହା ଏକ
ସାଧାରଣ ଅନୁଭୂତିରେ ପରିଣତ ହେବ ।

ଉତ୍ତର—ଯଦି ଆମ୍ଭମାନଙ୍କର ସିଦ୍ଧି ଏତିକରେ ସୀମିତ ହୁଏ ତେବେ ତ କିଛି ବି ହେବ ନାହିଁ, ଯେଉଁ ବସ୍ତୁକୁ ଆମ୍ଭେମାନେ ଆଶା ଓ ଅପେକ୍ଷା କରୁଛୁ ତାହା ହେଲା ପାର୍ଥିବ ଜୀବନରେ ଗୋଟିଏ ପୂର୍ଣ୍ଣାଙ୍ଗ ରୂପାନ୍ତର ।

***

ପ୍ରଶ୍ନ—ପୂଜ୍ୟା ମା, ମୁଁ ପ୍ରତି ମୁହୂର୍ତ୍ତରେ ଏହା ଅନୁଭବ କରୁଛି ଯେ ମୋ ଭିତରେ ଗୋଟିଏ ମହାନ୍ ରୂପାନ୍ତରର କାର୍ଯ୍ୟ ଚାଲୁଅଛି । ଏହା କ'ଣ ସତ୍ୟ ନୁହେଁ ?

ଉତ୍ତର—ଏହା ତ ନିଶ୍ଚିତ ସତ୍ୟ । ମାତ୍ର ମୋତେ ଏପରି ବୋଧ-ହେଉଛି ଯେ ତୁ ଯାହା କହୁଛୁ ତାଠାରୁ ଆହୁରି ଅଧିକ କିଛି ଘଟୁଛି ଏପରିକି ବାହ୍ୟଗଠନ ଏବଂ ଦୃଶ୍ୟମାନ ବସ୍ତୁ ମଧ୍ୟରେ ପରିବର୍ତ୍ତନ ଘଟୁଛି । ହଁ, ଏହି ପରିବର୍ତ୍ତନ ବହୁତ ସ୍ପଷ୍ଟ ଭାବରେ ଦେଖାଦିଏ ନାହିଁ, କାରଣ ବସ୍ତୁର ସ୍ୱଧର୍ମ ଓ ସତ୍ତ୍ୱାନୁସାରେ ଏହା ସାଧାରଣଭାବେ ଘଟିଥାଏ, କୌଣସି ମାନସିକ ନିର୍ଣ୍ଣୟଦ୍ୱାରା ଏହା ଘଟେ ନାହିଁ ।

***

ଉତ୍ତର—ନିଶ୍ଚୟ, ଭଗବତ୍ କୃପା ସଦାସର୍ବଦା କାର୍ଯ୍ୟକରି ଚାଲିଛି କିନ୍ତୁ ସ୍ଥୂଳ ଜଗତ ଓ ତା ମଧ୍ୟରେ ବାସ କରୁଥିବା ଲୋକେ ତାକୁ ଚିହ୍ନୁ ନାହାନ୍ତି !

***

ପ୍ରଶ୍ନ—ଭଗବାନ ମୋଠାରୁ କ'ଣ ଚାହାନ୍ତି ?

ଉତ୍ତର—ସେ ଚାହାନ୍ତି ତୁ ସର୍ବପ୍ରଥମେ ନିଜକୁ ଖୋଜି ବାହାର କର, ନିଜର ଅସଲ ସତ୍ତା, ଅର୍ଥାତ୍ ଚୈତ୍ୟସତ୍ତାଦ୍ୱାରା ନିଜର ନିମ୍ନ ସତ୍ତା ଉପରେ ଅଧିକାର ସ୍ଥାପିତ କର ଏବଂ ତାହା ଉପରେ ଶାସନ କର, ତେବେ ଯାଇ ତୁ ଏହି ମହାନ୍ ଭଗବତ୍ କର୍ମରେ ନିଶ୍ଚିତ ସ୍ୱାଭାବିକ ଭାବରେ ନିଜର ପ୍ରକୃତ ସ୍ଥାନ ପାଇପାରିବୁ ।

***

ପ୍ରଶ୍ନ—ମୋର ଅସଲ ସତ୍ତା କେଉଁଠି ଅଛି ?

ଉତ୍ତର—ବହୁତ ଗଭୀରରେ, କିମ୍ବା ଖୁବ୍ ଉଚ୍ଚରେ, ଊର୍ଦ୍ଧ୍ୱରେ ସ୍ୱବଗତ ପ୍ରାଣର ଅନ୍ତରାଳରେ, ମନର ଊର୍ଦ୍ଧ୍ୱରେ ।

***

ପ୍ରଶ୍ନ—ମା, ବଡ଼ କ୍ଷୋଭର ବିଷୟ ମୁଁ ମୋର ସେହି 'ଯଥାର୍ଥ ସତ୍ତା'କୁ ପାଇ ପାରୁନାହିଁ । ଯେବେଠାରୁ ମୁଁ ତାକୁ ଖୋଜିବାରେ ଲାଗିଲିଣି ଏହି ଶରୀର ବ୍ୟତୀତ ମୁଁ ଆଉ କିଛି ପାଉନି ଏବଂ ଏହାହିଁ ତୁଚ୍ଛ ବସ୍ତୁର ଓ ଅବ୍ୟବସ୍ଥିତ କାମନାର ଆଶ୍ରୟସ୍ଥଳ ।

ଉତ୍ତର—ନିରାଶ ନ ହୋଇ ଅନବରତ ପ୍ରୟାସ କରିବା ଉଚିତ ଏବଂ ସର୍ବପ୍ରଥମେ ଏହି ଶରୀରକୁ ନିଜର 'ସତ୍ତା' ବୋଲି ମାନିବା

ଅନୁଚିତ । ବସ୍ତୁତଃ ହୃଦ୍‌ଗତ ଭାବ ଓ ବିଚାର ଶରୀରକୁ ସଜୀବ କରନ୍ତି, ଏହା ବ୍ୟତୀତ ଏହାର ଅବସ୍ଥା କ'ଣ ହେବ ? ଗୋଟାଏ ନିର୍ଜୀବ, ଜଡ଼ ପିଣ୍ଡମାତ୍ର ।

*
**

ପ୍ରଶ୍ନ—ମା, ଏହା କିପରି ବସ୍ତୁ ଯାହା ମୋତେ ବରାବର ଏହି ସ୍ମରଣ କରାଇବାରେ ସହାୟତା କରିବ ଯେ ମୁଁ ଆଧ୍ୟାତ୍ମିକ ଜୀବନ ଯାପନ କରୁଛି ?

ଉତ୍ତର—ପ୍ରତ୍ୟେକ ବସ୍ତୁରେ ଏବଂ ସର୍ବଦା ଭଗବାନଙ୍କର ଉପସ୍ଥିତିର ଅନୁଭବ ।

*
**

ପ୍ରଶ୍ନ—ଆପଣ ନିଜର ପୁସ୍ତକ "ମାତୃବାଣୀ (ପ୍ରଥମ ଭାଗ)"ରେ କହିଛନ୍ତି ଯେ ଯୋଗ ପାଇଁ ନିଜକୁ ପ୍ରସ୍ତୁତ କରିବାକୁ ହେଲେ ଆରମ୍ଭରେ ଏବଂ ସର୍ବପ୍ରଥମେ ମନୁଷ୍ୟକୁ ସଚେତନ ହେବାକୁ ହେବ । ନିଜ ଭିତରେ ଭାଗବତ ଉପସ୍ଥିତି ବିଷୟରେ ସଚେତନ ହେବା ଆମର ଲକ୍ଷ୍ୟ । ମାତ୍ର ମୁଁ ବୁଝିପାରୁ ନାହିଁ ଯେ ଏକବାରେ ଆରମ୍ଭରେ ମୁଁ କିପରି ସଚେତନ ହୋଇପାରିବ ।

ଉତ୍ତର—ମୁଁ ଭାଗବତ ଉପସ୍ଥିତି ବିଷୟରେ ସଚେତନ ହେବା କଥା କହି ନାହିଁ । ମୁଁ କହିଛି ସଚେତନ ହେବାପାଇଁ ଅର୍ଥାତ୍

ମନୁଷ୍ୟର ନିଜ ଭିତରେ ଯାହାକିଛି ହେଉଛି ସେହି ବିଷୟରେ ସେ ଅଜ୍ଞାନ ନ ରହୁ ।

*
**

ପ୍ରଶ୍ନ—ମୁଁ ଘଟଣାଗୁଡ଼ିକୁ ଶାନ୍ତ ଚିତ୍ତରେ ଗ୍ରହଣ କରିପାରୁନି ।

ଉତ୍ତର—ମାତ୍ର ଯୋଗସାଧନା ନିମିତ୍ତ ଏହା ଅନିବାର୍ଯ୍ୟ; ଏବଂ ଯେ ଭଗବାନଙ୍କ ସହ ଯୁକ୍ତ ହେବାକୁ ତଥା ତାଙ୍କୁ ପ୍ରକଟ କରିବା ଭଳି ମହାନ୍ ଲକ୍ଷ୍ୟକୁ ନିଜର ସାମନାରେ ରଖିଛନ୍ତି ସେ କିପରି ଜୀବନର ତୁଚ୍ଛ ଓ ମୂର୍ଖତାପୂର୍ଣ୍ଣ ବସ୍ତୁଦ୍ୱାରା ଆକ୍ରାନ୍ତ ହେବେ ?

*
**

ପ୍ରଶ୍ନ—କେତେକ ଲୋକଙ୍କ ମତ ଏହି ଯେ ମନୁଷ୍ୟ ବାହ୍ୟ ପ୍ରକୃତି ସହ ଘନିଷ୍ଠ ଭାବରେ ମିଶିଯିବା ଉଚିତ, ଯଦ୍ୱାରା ବ୍ୟକ୍ତ ଜଗତର ପଶ୍ଚାତରେ ସ୍ୱଷ୍ଟରୂପେ ନିହିତ ଆନନ୍ଦର ରସାସ୍ୱାଦନ କରାଯାଇ ପାରେ ।

ଉତ୍ତର—ମୋ ମତରେ ଏକଥା ଠିକ୍ ନୁହେଁ । ବାହାର ପ୍ରକୃତି ସହ ଏକତ୍ୱପ୍ରାପ୍ତି ଆନନ୍ଦ ପରିବର୍ତ୍ତେ ନିଶ୍ଚୟ ଅଧିକ ଦୁଃଖ-କ୍ଳେଶ ଆଣି ଦେଇଥାଏ ।

*
**

ଉତ୍ତର—ଯଦି ତୁ ସଂସାରୀ ହୋଇଥା'ନ୍ତୁ, ଯେପରି ତୁ କହୁଛୁ ତେବେ ତୁ ଏଠାରେ ନରହି ସଂସାରରେ ରହିଥାଆନ୍ତୁ । ସତ୍ତାର ଏହିସବୁ ଗତବୃତ୍ତି ନିଜର ପୁରୁଣା ଜିନିଷଗୁଡ଼ିକ ପ୍ରତି ଖୁବ୍ ଆସକ୍ତ ଏବଂ ପରିବର୍ତ୍ତିତ ହେବାକୁ ଚାହାନ୍ତି ନାହିଁ । — କିନ୍ତୁ—ଦିନେ ନା ଦିନେ ସେସବୁଙ୍କୁ ଆତ୍ମସମର୍ପଣ କରିବାକୁ ହେବ ଏବଂ ରୂପାନ୍ତର ହେବାକୁ ପଡ଼ିବ ।

***

ପ୍ରଶ୍ନ—ମା, ପୁଣି ମୁଁ ଆପଣଙ୍କୁ ପଚାରିବାକୁ ଚାହେଁ ଯେ କେଉଁ ବସ୍ତୁ ମୋର ସତ୍ତାକୁ ବିଭକ୍ତ କରୁଛି ।

ଉତ୍ତର—ଏହି ସଂଘର୍ଷ ସତ୍ତାର ଦୁଇଟି ଭାଗ ମଧ୍ୟରେ ଚାଲୁଛି । ଗୋଟିଏ ହେଉଛି ସତ୍ତାର ସାତ୍ତ୍ୱିକ ଭାଗ, ଯାହା ଆତ୍ମ-ଚୈତନ୍ୟ ପାଇଁ ଅଭୀପ୍‌ସା କରୁଛି । ଆଉ ଅନ୍ୟଟି ହେଲା ତାମସିକ ଭାଗ ଯାହା ଅଚେତନ ଦ୍ୱାରା ଆକ୍ରାନ୍ତ ଓ ଶାସିତ ହେବାକୁ ନିଜକୁ ଛାଡ଼ିଦେଉଛି । ଅଥବା ଏପରି କୁହାଯାଇ ପାରେ ଯେ ଲଢ଼ାଇ ସେହି ସେହି ଭାଗରେ ହେଉଛି—ଯେଉଁଠି ଗୋଟିଏ ଭାଗ ଊର୍ଦ୍ଧ୍ୱକୁ ଉଠିଯିବାକୁ ଚାହେଁ ଏବଂ ଅନ୍ୟ ଭାଗ ତଳ ଆଡ଼କୁ ଟାଣୁଛି । ଆଉ ସେଇଥିପାଇଁ ଏହି ଭାଗଟି ସବୁ-ପ୍ରକାର ବାହ୍ୟ ପ୍ରଭାବଗୁଡ଼ିକର ଅଧୀନ ହୋଇଥାଏ ।

***

ପ୍ରଶ୍ନ—ମା, ଏ ସଂସାର ମୋତେ ଆଘାତ ଦେଇପାରେ, ମାତ୍ର କୌଣସି ପ୍ରକାର ସୁଖ ଦେଇପାରିବ ନାହିଁ । ମୁଁ ମଧ୍ୟ ସେହି ସୁଖ ପାଇବାକୁ ଚାହେଁନା ।

ଉତ୍ତର—ସଂସାର ଯେଉଁ ସୁଖ ଦେଇଥାଏ—ତାହାର ଊର୍ଦ୍ଧ୍ୱରେ ରହିବା ଉଚିତ ମାତ୍ର ତାହାର ଆଘାତ ବା କାହିଁକି ସହିବ ?

*
* *

ପ୍ରଶ୍ନ—ମା, ମୁଁ ନିରାସକ୍ତ ଜୀବନକୁ ଭଲପାଏ ନାହିଁ ।

ଉତ୍ତର—ଯଦି ବାସ୍ତବରେ ତୁମେ କୌଣସି ବିଷୟ ଅଥବା ବସ୍ତୁପ୍ରତି ଆସକ୍ତ ନୁହଁ, ତେବେ ଏହା ଏକ ବହୁତ ବଡ଼ ଯୌଗିକ ସିଦ୍ଧି ଏବଂ ଏଥିପାଇଁ ଅଭିଯୋଗ କରିବା ଭୁଲ ହେବ ।

*
* *

ପ୍ରଶ୍ନ—ମା, ମୋର ମନେହେଉଛି ଏ ସାରା ସଂସାର ମୋ ବିରୁଦ୍ଧରେ ଦଣ୍ଡାୟମାନ । ତେଣୁ ମୁଁ ନିରାଶ ହୋଇପଡ଼ୁଛି ।

ଉତ୍ତର—ତୁମେ କାହିଁକି ଭାବୁଛ ଯେ ସାରା ସଂସାର ତୁମର ବିରୁଦ୍ଧରେ—ଏହା ତ ନିହାତି ପିଲାଳିଆ ପ୍ରଶ୍ନ ।

*
* *

ପ୍ରଶ୍ନ—ମୋର ସ୍ଥୂଳ ମନ ଏପର୍ଯ୍ୟନ୍ତ ବିଶ୍ୱାସ କରିପାରୁ ନାହିଁ ଯେ ମନୁଷ୍ୟ ଜୀବନ ନିଜର ସମସ୍ତ ଦୁଃଖକଷ୍ଟ ଏବଂ ଏପରିକି ମୃତ୍ୟୁ ଉପରେ ବିଜୟ ହାସଲ କରିପାରିବ ।

ଉତ୍ତର—ହୁଏତ ବାସ୍ତବରେ ମାନବ ଜୀବନ ଏହି ବସ୍ତୁ ପ୍ରାପ୍ତ କରିବା ନିମିତ୍ତ ଅସମର୍ଥ, ମାତ୍ର ଦିବ୍ୟ ଜୀବନ ନିମିତ୍ତ କିଛି ବି ଅସମ୍ଭବ ନୁହେଁ ।

*
**

ପ୍ରଶ୍ନ—ଏ ସଂସାର ପ୍ରତି ବିତସ୍ପୃହ ହୋଇଯିବା ଅର୍ଥାତ୍ ଅତିଷ୍ଠ ହୋଇଉଠିବା କ'ଣ କିଛି ବିଚିତ୍ର କଥା ? ଗୋଟିଏ ଉଦ୍ଦେଶ୍ୟ (ଲକ୍ଷ୍ୟ) ପଛରେ ବାରମ୍ବାର ଘୁରିବୁଲିବା ଜୀବନ୍ତ ମରଣ ସଦୃଶ ।

ଉତ୍ତର—ଏହା ମଧ୍ୟ ଚିନ୍ତା କରିବାର ଗୋଟଏ ମାର୍ଗ—ମାତ୍ର ଆଉ ଗୋଟିଏ ମାର୍ଗ ମଧ୍ୟ ଅଛି, ଯାହାଦ୍ୱାରା ମନୁଷ୍ୟ ଏହା ଦେଖିପାରେ ଯେ ଏ ସଂସାରରେ ଅବିକଳ, ଏକାପରି ଦୁଇଟି ବସ୍ତୁ ନାହିଁ, ଦୁଇଟି କ୍ଷଣ ମଧ୍ୟ ନାହିଁ ଏବଂ ସମସ୍ତକିଛି ନିରନ୍ତର ପରିବର୍ତ୍ତିତ ହେଉଛି ।

*
**

ପ୍ରଶ୍ନ—ଆପଣଙ୍କର ପ୍ରାର୍ଥନାରେ ଗୋଟିଏ ବାକ୍ୟ ଅଛି—ଯାହାକୁ ମୁଁ ବୁଝିପାରିଲି ନାହିଁ । ତାହା ହେଉଛି, "ଶାଶ୍ୱତ ସତ୍ତାଙ୍କ ନିକଟରେ ସବୁ ଏକଭଳି, ତାହା ଧୂଳିର ତୁଚ୍ଛ କଣିକା ହୋଇଥାଉ କିମ୍ବା ଗୋଟିଏ ଜ୍ୟୋତିଷ୍ମାନ ନକ୍ଷତ୍ର ହୋଇଥାଉ ।

ଉତ୍ତର—(ଆଧ୍ୟାତ୍ମିକ ଭାଷାରେ କହିବାକୁ ଗଲେ) ପ୍ରତ୍ୟେକ ନକ୍ଷତ୍ର ଏକ ଭଳି; ଅର୍ଥାତ୍ ସମାନ। ମୋର କହିବାର ଉଦ୍ଦେଶ୍ୟ ହେଉଛି, ଯଦି କେହି ଗୃହେ ତେବେ ମନୁଷ୍ୟମାନଙ୍କୁ ଧୂଳିର କଣିକା ବୋଲି କହିପାରେ, ଅଥବା ସେ ସେମାନଙ୍କୁ ନକ୍ଷତ୍ର ସଦୃଶ ମଧ୍ୟ ଭାବିପାରେ। ଏହି ଦୁଇ ଅବସ୍ଥାରେ ସେ ଶାଶ୍ୱତ ସତ୍ତାଙ୍କ ପାଖରେ ଆକାର ଓ ମୂଲ୍ୟରେ ସମାନ।



ପ୍ରଶ୍ନ—ହେ ମୋର ପ୍ରିୟ ଜନନୀ ! ମୋତେ ଠିକ୍ ରାସ୍ତା ଦେଖାଅ, ମୋର ମନକୁ ଉଦ୍‌ଭାସିତ କର ଏବଂ ମୁଁ ପ୍ରାର୍ଥନା କରୁଛି, ତୋ ଓ ମୋ ମଧ୍ୟରେ ଯେପରି କୌଣସି ପ୍ରଭେଦ ଓ ଦୂରତ୍ୱ ନ ରହେ ।

ଉତ୍ତର—ମୁଁ ମଧ୍ୟ ଆମ ଭିତରେ କୌଣସି ଦୂରତ୍ୱ ଚାହେଁ ନାହିଁ । ମାତ୍ର ଏ ସମ୍ବନ୍ଧ ଦୃଢ଼ ଓ ସତ୍ୟ ହେବା ଉଚିତ । ଅର୍ଥାତ୍ ଏହାର ଆଧାର ଦିବ୍ୟ ଚେତନା ଦ୍ୱାରା ପ୍ରାପ୍ତ ଐକ୍ୟ ଉପରେ ସ୍ଥାପିତ ହେବା ଆବଶ୍ୟକ ।

*
**

ଉତ୍ତର—ନିଜର ହୃଦୟକୁ ଆହୁରି ପ୍ରସାରିତ ଓ ଆହୁରି ଉତ୍ତମ ଭାବରେ ଖୋଲି ଧର, ତେବେଯାଇ ଆମ ମଝିରେ ଥିବା ଦୂରତ୍ୱ ବିଲୀନ ହୋଇଯିବ ।

*
**

ପ୍ରଶ୍ନ—ଯେଉଁ ବନ୍ଧନ ମୋତେ ଆପଣଙ୍କଠାରୁ ଏବଂ ଭଗବାନଙ୍କଠାରୁ ଦୂରେଇ ରଖିଛି ତାହାକୁ ଛିନ୍ନ କରିବାକୁ ହେବ । ମା, ମୋର କ'ଣ ଯେ କରିବା ଉଚିତ ମୁଁ ଜାଣିପାରୁନି ।

ଉତ୍ତର—ଗୋଟାଏ ଶାନ୍ତ ଏବଂ ଅଚଳ, ଅଟଳ ସଂକଳ୍ପ ଶକ୍ତିଦ୍ୱାରା ଏ କାର୍ଯ୍ୟ ସାଧିତ ହେବା ସମ୍ଭବ ।

***

ପ୍ରଶ୍ନ—ମୋର ସମସ୍ତ ସତ୍ତା କେବଳହିଁ ସେହି ପ୍ରେମ ହୋଇଉଠୁ ଯାହା ନିଜର ସମସ୍ତକିଛି ଦେଇଦେବାକୁ ଚାହେଁ ଏବଂ ଯାହା ମୋତେ ଆପଣଙ୍କ ଆଡ଼କୁ ନେଇଯାଏ ।

ଉତ୍ତର—ଏହି ଅଭୀପ୍ସା ଯଦି ତୁମ ଭିତରେ ଦୃଢ଼ ହୁଏ, ତେବେ ବିଜୟ ସୁନିଶ୍ଚିତ । ଦିନ ଆସିବ ଯେତେବେଳେ ମୋ ପାଇଁ ତୋ ମନରେ ଏପରି ଶ୍ରଦ୍ଧା ଜନ୍ମିବ, ଯାହା ତୁମକୁ ଶକ୍ତି ଓ ଆନନ୍ଦରେ ପରିପୂର୍ଣ୍ଣ କରିଦେବ ।

***

ପ୍ରଶ୍ନ—ମା ଗୋ ! ମୁଁ ମୋର ନିଜର ସମସ୍ତ ସଂକଳ୍ପ ଏବଂ ସମସ୍ତ ପ୍ରୟାସ ସହ ସେହି ପ୍ରେମକୁ ଉପଲବ୍ଧି କରିବାକୁ ଚାହୁଁଛି ଯାହାକୁ ତୁ ତୋର ଦିବ୍ୟଦୃଷ୍ଟିରେ ଦେଖିପାରୁଛୁ ।

ଉତ୍ତର—ମୁଁ ତୋର ମହାନ୍ ପ୍ରୟାସରେ ସର୍ବଦା ତୋ ସହିତ ରହିଥିବି ।

***

ପ୍ରଶ୍ନ—ହେ ମୋର ପ୍ରିୟ ଜନନି ! ମୁଁ ଏହା କହୁନାହିଁ ଯେ ମୁଁ ତୋତେ ଭଲପାଏ ଏବଂ ମୁଁ ତୋର । ତାହା ତ ମୋତେ ମୋର କାର୍ଯ୍ୟଦ୍ୱାରା ପ୍ରମାଣ କରିବାକୁ ହେବ ନଚେତ୍ ଏହିସବୁ ଶବ୍ଦ ନିରର୍ଥକ ଯାହାର ଆଢ଼ୁଆଳରେ ମନୁଷ୍ୟ ଆଶ୍ରୟ ଏବଂ ସଂରକ୍ଷଣ ଖୋଜିବସେ । ତଥାପି ମଧ୍ୟ ମୁଁ ସର୍ବଦା ତୋର ସନ୍ତାନ ।

ଉତ୍ତର—ଖୁବ୍ ଭଲ କଥା । ବାସ୍ତବରେ ତୁ ସର୍ବଦାହିଁ ମୋର ସନ୍ତାନ ଏବଂ ମୁଁ ଆଶା କରୁଛି ଯେ ତୁ ଆହୁରି ବେଶୀଭାବେ ଭଲ ସନ୍ତାନ ହେବୁ ଏବଂ ଅଖଣ୍ଡ ଦୃଢ଼ ନିଷ୍ଠା ଓ ସତ୍ୟତା ସହ କହିପାରିବୁ "ମୁଁ ତୋତେ ଭଲପାଏ ଏବଂ ଚିରକାଳ ପାଇଁ ତୋର ଅଟେ ।"

ମୋର ଆଶୀର୍ବାଦ ।

***

ପ୍ରଶ୍ନ—ହେ ମା ! ମୋତେ ତୋ ପାଖକୁ ନେଇନେ—ମୁଁ ତୋତେ ଚିରଦିନ ପାଇଁ ନିଜ ହୃଦୟରେ ସ୍ଥାପନ କରିବି । କିନ୍ତୁ ମୁଁ ତୋତେ ହରାଇବି,—ଏହା ମୁଁ କେବେ ବି ସହି ପାରିବି ନାହିଁ ।

ଉତ୍ତର—ତୁ ମୋତେ ହରାଇବାର କୌଣସି ପ୍ରଶ୍ନ ଉଠୁ ନାହିଁ । ଆମ୍ଭେମାନେ ନିଜ ହୃଦୟରେ ଏକ ଶାଶ୍ୱତ ଚେତନାକୁ ବର୍ଦ୍ଧନ କରୁଛୁ ଏବଂ ତାହାର ବିଷୟରେ ଆମକୁ ସଚେତନ ହେବାକୁ ହେବ ।

***

ପ୍ରଶ୍ନ—ଯେ କୌଣସି କାରଣରୁ ହେଉ ନା କାହିଁକି, ଯେତେବେଳେ ମୋର ଚେତନା ତୋତେ ହରାଇ ବସେ, ସେତେବେଳେ ମୁଁ ନିରାନନ୍ଦ ଓ ଶକ୍ତିବିହୀନ ହୋଇଯାଏ ।

ଉତ୍ତର—କୌଣସି ମୁହୂର୍ତ୍ତରେ ମଧ୍ୟ ମୁଁ ତୋତେ ଭୁଲି ନାହିଁ । ତୁ ତୋ ଓ ମୋ ମଧ୍ୟରେ ବହୁତ ପ୍ରକାର ଭିନ୍ନ ଭିନ୍ନ ପ୍ରଭାବକୁ ସ୍ଥାନ ଦେଉ, ନୁହେଁ କି ?

***

ପ୍ରଶ୍ନ—ମା, ମୋ ନିଜ ପାଖରେ ତୋର ଉପସ୍ଥିତିକୁ ନିରନ୍ତର ଅନୁଭବ କରିବା କାହିଁକି ଏତେ କଠିନ ହେଉଛି ? ମୋର ହୃଦୟର ଗଭୀରତା ମଧ୍ୟରେ ମୁଁ ଭଲଭାବରେ ଅନୁଭବ କରୁଛି ଯେ ତୋ ବିନା ମୋ ପକ୍ଷରେ ଜୀବନ ଧାରଣ କରିବାର କୌଣସି ମୂଲ୍ୟ ନାହିଁ, ତା ସତ୍ତ୍ୱେ ମୋର ମନ ସାମାନ୍ୟ ସୁବିଧା ପାଇଲେ ଏଣେତେଣେ ଉଡ଼ିବୁଲୁଛି ।

ଉତ୍ତର—ଠିକ୍ ଏହି କାରଣରୁହିଁ ତୁ ମୋର ଉପସ୍ଥିତିର ଭାବକୁ ହରାଇ ବସୁ ।

***

ଉତ୍ତର—ମୁଁ ସର୍ବଦାହିଁ ତୋ ସଙ୍ଗେ ରହିଅଛି ଏବଂ ଏହି ଆନ୍ତର ଉପସ୍ଥିତି ବିଷୟରେ ସଚେତନ ହେବା ସାଧନାର ଏକ ମହତ୍ତ୍ୱପୂର୍ଣ୍ଣ ବସ୍ତୁ । 'ଅ'କୁ ପଚାର, ସେ ତୋତେ କହିବ ଯେ ଏହି ଉପସ୍ଥିତି ଗୋଟାଏ ଶ୍ରଦ୍ଧା କିମ୍ବା ମାନସିକ କଳ୍ପନାର ବସ୍ତୁ ନୁହେଁ; ମାତ୍ର ଏହା ଏକ ନିବିଡ଼ ସତ୍ୟ ଏବଂ ଆନ୍ତର ଚେତନା ପାଖରେ ଏହା ସ୍ଥୂଳ ବସ୍ତୁ ତୁଲ୍ୟ ଏକବାରେ ବାସ୍ତବ ଏବଂ ପ୍ରତ୍ୟକ୍ଷ ।

***

ପ୍ରଶ୍ନ—ମୋର ପରମ ପ୍ରିୟ ଜନନି ! କିପରି ମୁଁ ମୋର ଏ ଅଜ୍ଞାନ ସତ୍ତାକୁ ଏହି ବିଶ୍ୱାସ ଦେବାରେ ସକ୍ଷମ ହେବି ଯେ ନିଜର ହୃଦୟ କେନ୍ଦ୍ରରେ ତୋତେ ପାଇବା ସମ୍ଭବ ?

ଉତ୍ତର—ତୋ ହୃଦୟ ଏଥିରେ ନିଶ୍ଚିତରୂପେ ବିଶ୍ୱାସ କରିବାର ପ୍ରଶ୍ନ ଉଠୁନାହିଁ । ବରଂ ଏହି ଦିବ୍ୟ ଉପସ୍ଥିତିକୁ ଅନୁଭବ କର, ତେବେ ତୁ ବୁଝିପାରିବୁ ଯେ ତୋ ହୃଦୟର ଗଭୀରରେ ସଦାସର୍ବଦା ସେହି ଉପସ୍ଥିତି ବିଦ୍ୟମାନ ।

***

ପ୍ରଶ୍ନ—ଏହି ସମସ୍ତ ଅନ୍ଧକାରରୁ ମୋତେ ମୁକ୍ତ କର ଯାହା ମୋତେ ଅନ୍ଧ କରି ଦେଉଛି ଏବଂ ତୁ ସର୍ବଦା ମୋ ସଙ୍ଗରେ ରହ ।

ଉତ୍ତର—ମୁଁ ତୋର ପ୍ରତ୍ୟେକ ଚିନ୍ତା ତଥା ପ୍ରତ୍ୟେକ ଅଭୀପ୍‌ସା ମଧ୍ୟରେ ବିଦ୍ୟମାନ, ଯେଉଁସବୁ ଚିନ୍ତା ଏବଂ ଅଭୀପ୍‌ସାକୁ ତୁ ମୋ ତରଫକୁ ଫେରାଉ । ଯଦି ତୁ ସର୍ବଦା ମୋ ଚେତନା ମଧ୍ୟରେ ନଥା'ନ୍ତୁ ତେବେ ତୁ ମୋ ସମ୍ବନ୍ଧରେ ଚିନ୍ତା ମଧ୍ୟ କରିପାରନ୍ତୁ ନାହିଁ । ମୋର ଉପସ୍ଥିତି ଯେ ସର୍ବଦା ତୋ ସହିତ ରହିଛି, ଏ ବିଷୟରେ ଏକବାରେ ନିଶ୍ଚିତ ହୁଅ । ଏହା ସହିତ ମୋର ଆଶୀର୍ବାଦ ମଧ୍ୟ ରହିଛି ।

*
**

ପ୍ରଶ୍ନ—ପରମ ଆରାଧ୍ୟା ମା, ମୁଁ ସେହି କରୁଣାର ମୂଳ ସ୍ରୋତକୁ କିପରି ପାଇପାରିବି, ଯାହା ମୋତେ ଏହି (ବୋଧ) ସାନ୍ତ୍ୱନା ଦେଇପାରିବ ଯେ ଭଗବାନ ସର୍ବଦା ଏବଂ ସର୍ବତ୍ର ବିଦ୍ୟମାନ ?

ଉତ୍ତର—ସର୍ବ ପ୍ରଥମେ ତୋତେ ଭଗବାନଙ୍କୁ ପ୍ରାପ୍ତ କରିବାକୁ ହେବ । ହୁଏତ ତୁ ତାଙ୍କୁ ନିଜ ଭିତରେ ଅନ୍ତର୍ମୁଖୀ ଏବଂ ଏକାଗ୍ର ହୋଇ ପ୍ରାପ୍ତ କରିବୁ ଅଥବା ପ୍ରେମ ଓ ସମର୍ପଣଦ୍ୱାରା ଶ୍ରୀଅରବିନ୍ଦ ଏବଂ ମୋ ଭିତରେ ତାଙ୍କୁ ପ୍ରାପ୍ତ କରିବୁ । ପରେ ଯେବେ ତୁ ଭଗବାନଙ୍କୁ ପ୍ରାପ୍ତ ହେଉ ତେବେ ତୁ ସ୍ୱାଭାବିକ ଭାବରେ ପ୍ରତ୍ୟେକ ବସ୍ତୁରେ ଏବଂ ସର୍ବତ୍ର ତାଙ୍କୁ ଦେଖିପାରିବୁ ।

*
**

ଉତ୍ତର—ଭଗବାନଙ୍କ ସହିତ ଯୁକ୍ତ ହେବା ପାଇଁ ଦୁଇଟି ମାର୍ଗ ରହିଛି—ଗୋଟିଏ ହେଉଛି, ହୃଦୟରେ ଏକାଗ୍ର ହେବା ଏବଂ ତାଙ୍କର ଉପସ୍ଥିତିକୁ ଅନୁଭବ କରିବା ପାଇଁ ହୃଦୟର ଗମ୍ଭୀରତା ଭିତରେ ବୁଡ଼ି ଯିବା । ଅନ୍ୟଟି ହେଉଛି ତାଙ୍କର ବାହୁଦ୍ୱୟ ମଧ୍ୟରେ ନିଜକୁ ଛାଡ଼ି ଦେବା; ଶିଶୁ ତାର ମା' କୋଳରେ ରହିଲା ପରି ଆମେ ସେହି ବାହୁଦ୍ୱୟ ମଧ୍ୟରେ ନିଜକୁ ହଜାଇ ଦେବା ଏବଂ ଅନ୍ୟ ସବୁକିଛିକୁ ସମ୍ପୂର୍ଣ୍ଣରୂପେ ବର୍ଜ୍ଜନ କରିବା, ଆଉ ଏହି ଦୁଇଟି ମାର୍ଗ ମଧ୍ୟରୁ ମୋତେ ଦ୍ୱିତୀୟଟି ଅଧିକ ସହଜ ବୋଲି ଜଣାଯାଉଛି ।

*
**

ପ୍ରଶ୍ନ—ମା, ଯଦି ଭଗବାନ ମୋର ପ୍ରେମ ଏବଂ ମୋର ଆତ୍ମାର ଦାନ ବଦଳରେ ମୋର ସମ୍ମୁଖରେ ପ୍ରକଟ ହୁଅନ୍ତି ତେବେ ଏହି କଥା ମୋ ପାଇଁ ବହୁତ ସହଜ ହୁଅନ୍ତା ।

ଉତ୍ତର—କେବଳ ଆତ୍ମାର ଦାନ ନୁହେଁ, ବରଂ ସମଗ୍ର ସତ୍ତାକୁ ନିଃଶେଷରେ, ଅଖଣ୍ଡରୂପେ ସମର୍ପଣ କରିବାକୁ ହେବ ।

*
**

ପ୍ରଶ୍ନ—ତାହା କପରି ଶକ୍ତି, ଯାହା ମୋତେ ତୋଠାରୁ ଦୂରେଇ ରଖିଛି ?

ଉତ୍ତର—ତାହା ଠିକ୍ ନୁହେଁ । ଏହା ଏକବାରେ ଭୁଲ ଧାରଣା ଯେ ମୁଁ ତୋଠାରୁ ଦୂରେଇ ରହିବାକୁ ଚାହୁଁଛି । ବରଂ ମୋର ସମୀପକୁ ଆସିବା ପାଇଁ ମୁଁ ଏତେ ତଳ ସ୍ତର ପର୍ଯ୍ୟନ୍ତ ଓହ୍ଲାଇ ଯିବାକୁ ଆଶା କରିବା ପରିବର୍ତ୍ତେ ତୋତେ ମୋ ପର୍ଯ୍ୟନ୍ତ ଉଠି ଆସିବାକୁ ହେବ ।

*
**

ପ୍ରଶ୍ନ—ମୋର ପରମ ଆରାଧ୍ୟା ମା, ଥରେ ଆପଣ ମୋତେ ଲେଖି- ଥିଲେ ଯେ ମୋତେ ସେହି ସ୍ତର ପର୍ଯ୍ୟନ୍ତ ଉଠିବାକୁ ହେବ ଯେଉଁଠି ଆପଣ ରହୁଛନ୍ତି, ଯେଉଁଠାରେ କି ମୁଁ ଆପଣଙ୍କୁ ଘନିଷ୍ଠ ଭାବରେ ପାଇପାରିବି ଏବଂ ମୋର ଏ ଆଶା କରିବା ଅନୁଚିତ ଯେ ଆପଣ ଏହି ନିମ୍ନ ସ୍ତରକୁ ଓହ୍ଲାଇ ଆସନ୍ତୁ । କିନ୍ତୁ ମା, ଆପଣ ଏତେ ମହାନ୍ ଏବଂ ଏତେ ଉପରେ ଅଛନ୍ତି ଯେ ମୋର ସେ ପର୍ଯ୍ୟନ୍ତ ଉଠିବା ଏକବାରେ ଅସମ୍ଭବ ମନେ ହେଉଛି । ଏହି ଦୁଇଟି ସ୍ତର (ଆପଣଙ୍କର ଓ ମୋର) ମଧ୍ୟରେ ଗୋଟିଏ ଜଗତର ବ୍ୟବଧାନ । ମୁଁ ତ ସେହି ଦେବମୁହୂର୍ତ୍ତକୁ ସ୍ୱପ୍ନରେ ମଧ୍ୟ ସାହସ କରିପାରୁ ନାହିଁ ଯେ ମୁଁ ଯାଇ ଆପଣଙ୍କ ପାଖରେ ପହଞ୍ଚିପାରିବି । ଆପଣ ସର୍ବଦା ଖୁବ୍ ଉଚ୍ଚରେ ରହିବେ ଆଉ ମୁଁ ଆପଣଙ୍କ ପାଖରେ ପହଞ୍ଚି- ବାକୁ ଅଭୀପ୍ସା କରିବି; ମୁଁ ଗୋଟିଏ ସ୍ତରରୁ ଅନ୍ୟ ସ୍ତରକୁ ଆପଣଙ୍କୁ ଅନୁସରଣ କରିବି; ମାତ୍ର ଆପଣ ସର୍ବଦା ମୋ- ଠାରୁ ଦୂରରେ ରହିବେ । ଏ ସବୁ ମୋତେ କିଛି ଖରାପ ବୋଧ ହେଉନି; କାରଣ ମୁଁ ମାନୁଛି ଯେ ଏହି ଖୋଜିବାରେ

ଏକ ମହାନ୍ ଆନନ୍ଦ ଭରି ରହିଛି । ମାତ୍ର ଏହା ମଧ୍ୟ ସତ୍ୟ ଯେ ମୋର ହୃଦୟ ବରାବର ଭୂଷିତ ହୋଇ ରହିବ ।

ଉତ୍ତର—ତୁ ଯାହା କହୁଛୁ ତାହା ଗୋଟାଏ ବିଶେଷ ଦୃଷ୍ଟିରୁ ଠିକ୍ । ମାତ୍ର ଚେତନାର ଏପରି ଏକ ଓଲଟପାଲଟ ବି ହୋଇଥାଏ ଯାହା ମନୁଷ୍ୟକୁ ଅନ୍ଧକାର ତଥା ମିଥ୍ୟାପୂର୍ଣ୍ଣ ଅଜ୍ଞାନ ସ୍ଥିତି ମଧ୍ୟରୁ ଟାଣିଆଣି ସତ୍ୟର ଆବେଷ୍ଟନୀ ମଧ୍ୟରେ ପ୍ରବେଶ କରିବାରେ ସହାୟତା କରେ ଏବଂ ଯେତେବେଳେ ଚେତନାର ଏହି ପ୍ରତ୍ୟାବର୍ତ୍ତନ ଓ ରୂପାନ୍ତର ହେବ ସେତେ-ବେଳେ ତୁ ସବୁ ସମୟରେ ନିଜକୁ ମୋ ପାଖରେ ଥିଲାପରି ଅନୁଭବ କରିବୁ ।

***

ପ୍ରଶ୍ନ—ମୋର ପରମ ପ୍ରିୟ ଜନନି ! କ'ଣ ଜଡ଼ ସ୍ତର ବ୍ୟତୀତ ଅନ୍ୟ କୌଣସି ସ୍ତରରେ ଆପଣଙ୍କ ସହିତ ଏକ ହେବା ସମ୍ଭବ ନୁହେଁ ? ମୁଁ ଏ ଶରୀର ଛାଡ଼ିବା ପରେ ମିଳନର କଥା କହିବାକୁ ଚାହୁଁ ନାହିଁ । ମୋର କହିବାର ଉଦ୍ଦେଶ୍ୟ ହେଉଛି —ଏହି ଶରୀର ରହିବା ଅବସ୍ଥାରେ ମଧ୍ୟ କ'ଣ ଅନ୍ୟ କୌଣସି ଉଚ୍ଚତର ସ୍ତରରେ ଆମର ମିଳନ ସମ୍ଭବ ନୁହେଁ ?

ଉତ୍ତର—ନିଶ୍ଚୟ, ତାହା ଅବଶ୍ୟ ସମ୍ଭବ—ମାତ୍ର ସେହି ସକଳ ସ୍ତରର ଚେତନା ପ୍ରତି ସେତେବେଳେ ଜାଗ୍ରତ ହେବାକୁ ହେବ ।

***

ପ୍ରଶ୍ନ—ମା, ମୁଁ ଏହି ଶରୀରକୁ ପୂର୍ବପୂର ତ୍ୟାଗ କରିବାକୁ ଚାହୁଁଛି ବାସ୍ତବରେ ଏହି ଶରୀରହିଁ ମୋତେ ଆପଣଙ୍କଠାରୁ ପୃଥକ୍ କରି ରଖୁଛି ।

ଉତ୍ତର—ତୋ ଶରୀରହିଁ ତୋତେ ମୋଠାରୁ ପୃଥକ୍ କରି ରଖିଛି, ଏପରି କହିବା ନିହାତି ମୂର୍ଖତାର ପରିଚୟସୂଚକ । ବରଂ ମୋର ମନେହୁଏ ବ୍ୟାପାରଟି ଠିକ୍ ଏହାର ବିପରୀତ—କାରଣ ଯଦି ମୋତେ ପ୍ରତିଦିନ ଦେଖିବାର ସମ୍ଭାବନା ନଥା'ନ୍ତା, ତେବେ ତୁ ତୋର ଚେତନାର ବର୍ତ୍ତମାନ ଅବସ୍ଥାରେ ମୋ ସହିତ କିପରି ସମ୍ପର୍କ ରଖିଥା'ନ୍ତୁ ? ଯେତେବେଳେ ତୁ ସ୍ଥୂଳ ଦୃଷ୍ଟିରେ ମୋତେ ଦେଖି ନ ପାରୁ ତେତେବେଳେ କ'ଣ ତୁ ମୋର ଉପସ୍ଥିତିକୁ ସ୍ପଷ୍ଟରୂପେ ଅନୁଭବ କରିବାରେ ସମର୍ଥ ହୋଇପାରୁ ? ମୋର ବିଶ୍ୱାସ ହେଉନାହିଁ; କାରଣ ଯଦି ବାସ୍ତବରେ ଏପରି ହୋଇଥାଆନ୍ତା ତେବେ ତୁ ଏହି ଦୂରତ୍ୱର ଅଭିଯୋଗ କରନ୍ତୁ ନାହିଁ, ବରଂ ତୁ ଏହା ଜାଣିପାରନ୍ତୁ ଯେ ଆମ ମଝିରେ କୌଣସି ଦୂରତ୍ୱ ନାହିଁ ଏବଂ ତୋର ଯଥାର୍ଥ ସତ୍ତାରେ ଆମ୍ଭେମାନେ ସର୍ବଦା ମିଳିତ ଓ ଯୁକ୍ତ ।

ତୁ ଯଦି ଭାବୁ ଯେ ତୁ ଶରୀର ଛାଡ଼ିବାଦ୍ୱାରା ମୋ ସହିତ ଘନିଷ୍ଠତା ପ୍ରାପ୍ତ ହେବୁ ତେବେ ଏହା ଗୋଟାଏ ସମ୍ପୂର୍ଣ୍ଣ ଭ୍ରାନ୍ତ ଧାରଣା, କାହିଁକି ନା ଏ ଶରୀର ନଷ୍ଟ ହେଉ ଅଥବା ବଞ୍ଚିରହୁ ପ୍ରାଣସତ୍ତା ସର୍ବଦା ସେହିପରି ରହିଯାଏ, ଏବଂ ଯଦି ପ୍ରାଣସତ୍ତା ଜୀବିତ ଅବସ୍ଥାରେ ସାମୀପ୍ୟ ଏବଂ ଘନିଷ୍ଠତାକୁ ଅନୁଭବ ନ କରିପାରିଲା

ତେବେ ନ୍ୟାଯ୍ୟତଃ ଏହା କପରି ଆଶା କରାଯାଇ ପାରିବ ଯେ ଶରୀର ଛାଡ଼ିବା ପରେ ତାହା ଅକସ୍ମାତ୍ ଏଥିନିମିତ୍ତ ସମର୍ଥ ହେବ ? ଏହା ତ ପୂର୍ବାପର ଅଜ୍ଞାନତାଭରା ବାଲ୍ୟ ଚପଳତା ।

ଆଉ ସେହି ଅନ୍ୟ ଧାରଣାଟି ମଧ୍ୟ ନିହାତି ଭୁଲ :—ଅର୍ଥାତ୍ ଯଦି କେହି ଶରୀର ପରିବର୍ତ୍ତନ କରିଦିଏ ତେବେ ପରବର୍ତ୍ତୀ ଶରୀରଟି ନିଶ୍ଚୟହିଁ ଅଧିକ ଉନ୍ନତ ହେବ । ଯଦି ବ୍ୟକ୍ତି ଦୈହିକ ଜୀବନରୁ ପ୍ରାପ୍ତ ସୁଯୋଗରୁ ପ୍ରଗତର ପରିପୂର୍ଣ୍ଣ ଓ ଚରମ ଲାଭ ଉଠାଇବାରେ ସକ୍ଷମ ହୋଇପାରେ ତେବେ ସେ ପରଜନ୍ମରେ ଏକ ଉଚ୍ଚତର ଶରୀର ପାଇବାର ଆଶା କରିପାରେ । ନଚେତ୍ ଯେକୌଣସି ପ୍ରକାର ଚ୍ୟୁତି ସ୍ୱାଭାବିକ ରୂପରେ ସତ୍ତା ମଧ୍ୟରେ ଏକ ହ୍ରାସ ଆଣିଦିଏ ।

ତୁ ଯେଉଁ ମିଳନ ନିମିତ୍ତ ଅଭୀପ୍ସା କରୁଛୁ ତାହା ପାଇଁ ଗୋଟିଏ ମାତ୍ର ସୁନିଶ୍ଚିତ ମାର୍ଗ ହେଉଛି ବର୍ତ୍ତମାନ ଏହି ଜୀବନରେ ସାହସର ସହିତ ସବୁ ପ୍ରକାର ବାଧାବିଘ୍ନ ଓ କଠିନତାର ସମ୍ମୁଖୀନ ହେବା ଏବଂ ସେହିସବୁ ଉପରେ ବିଜୟ ପ୍ରାପ୍ତ କରିବା ।

***

ପ୍ରଶ୍ନ—ମୋର ଏକମାତ୍ର ଆଶା ହେଲା ଯେ ମୋ ଦ୍ୱାରା ଯେତିକି ପ୍ରଗତି ହେବା ସମ୍ଭବ ସେତିକି କରିଯିବି ଯାହାଦ୍ୱାରା ମୋର ପରଜନ୍ମ ଏ ଜନ୍ମପରି ନିରର୍ଥକ ହେବ ନାହିଁ ।

ଉତ୍ତର—ଏସବୁ ମୂର୍ଖତାପୂର୍ଣ୍ଣ ମନ୍ତବ୍ୟ । ଆମକୁ ପରଜନ୍ମ ନିମିତ୍ତ ନୁହେଁ ମାତ୍ର ନିଜର ଅନ୍ତିମ ଶ୍ୱାସଥିବା ପର୍ଯ୍ୟନ୍ତ ଏହି ଜନ୍ମ ଆମ୍ଭମାନଙ୍କୁ ଆମର ନିଜର ଯେଉଁ ସମସ୍ତ ସମ୍ଭାବନାକୁ ଦେଇଛନ୍ତି ତାହା ସମ୍ବନ୍ଧରେ ବ୍ୟସ୍ତ ରହିବା ଉଚିତ । ଯେଉଁ କର୍ମ ଏହି ଜନ୍ମରେ କରାଯାଇ ପାରିବ ତାକୁ ପରଜନ୍ମ ପାଇଁ ପକାଇ ରଖିବା ଅର୍ଥ ଯେଉଁ କାମ ଆଜି କରିବା କଥା ତାକୁ ଆଗାମୀ କାଲି ପାଇଁ ପକାଇ ରଖିବା ସଙ୍ଗେ ସମାନ । ଏହା ଆଳସ୍ୟର ଲକ୍ଷଣ । କେବଳ ମୃତ୍ୟୁରେହିଁ ପୂର୍ଣ୍ଣାଙ୍ଗ ସିଦ୍ଧିର ସମ୍ଭାବନା ବିନଷ୍ଟ ହୋଇଥାଏ । ଯେପର୍ଯ୍ୟନ୍ତ ମନୁଷ୍ୟ ଜୀବିତ ଅଛି ସେ ପର୍ଯ୍ୟନ୍ତ କୌଣସି କଥା ଅସମ୍ଭବ ନୁହେଁ ।

ଜୀବିତାବସ୍ଥାରେ ଯେଉଁ ବସ୍ତୁକୁ ପ୍ରାପ୍ତ ହେବା କିମ୍ବା ଯାହା ଉପରେ ଜୟଲାଭ କରିବା ଅସମ୍ଭବ, ତାହା ମୃତ୍ୟୁ ପରେ କେବେ ବି ମିଳେ ନାହିଁ, ଏହା ନିଶ୍ଚିତ କଥା ।

ସତ କଥା କହିବାକୁ ଗଲେ ଏହି ଭୌତିକ ଜୀବନହିଁ ପ୍ରଗତି ଏବଂ ସିଦ୍ଧି ପ୍ରାପ୍ତ କରିବାର ଯଥାର୍ଥ କ୍ଷେତ୍ର ଅଟେ ।

***

ପ୍ରଶ୍ନ—ସ୍ନେହମୟୀ ଜନନି, ହୁଏତ ମୋତେ ରୂପାନ୍ତରିତ ହେବାକୁ ହେବ ଅଥବା ନିଜର ଅସ୍ତିତ୍ୱକୁ ଲୋପ କରିଦେବାକୁ ହେବ ।

ଉତ୍ତର—ଅସ୍ତିତ୍ୱକୁ ଲୋପ କରିଦେବା ସମ୍ପୂର୍ଣ୍ଣ ଅସମ୍ଭବ । ଏହି ଅଭିବ୍ୟକ୍ତ ଜଗତରେ ଯାହା ବିଦ୍ୟମାନ ତାହା ପାଇଁ ଏଠାରୁ ଫେରିଯିବାର ଗୋଟାଏ ମାତ୍ର ଦ୍ୱାର ଅଛି, ଏବଂ ତାହା ହେଉଛି ଆଧ୍ୟାତ୍ମିକ ମୁକ୍ତି ଅର୍ଥାତ୍ ରୂପାନ୍ତର ।



ପ୍ରଶ୍ନ—ମୁଁ ପ୍ରାୟ ନିଜେ ଅନେକ ସମୟରେ ନିଜକୁ ଏହି ପ୍ରଶ୍ନ କରିଥାଏ ଯେ ଆପଣଙ୍କ ସାମୀପ୍ୟ ଲାଭ କରିବା—ଏହି ଆକାଂକ୍ଷା ପଛରେ କୌଣସି ସତ୍ୟ ନିହିତ ଅଛି କି ?

ଉତ୍ତର—ହଁ, ଭଗବାନଙ୍କ ସଙ୍ଗେ ନିଜ ଚେତନା ଏବଂ ଇଚ୍ଛାଶକ୍ତିର ସହିତ ତାଦାତ୍ମ୍ୟ ସ୍ଥାପନ କରି ତାହା ସହିତ ପୂର୍ଣ୍ଣ ଏକତ୍ୱ ଲାଭ କରିବା—ଏହି ସତ୍ୟ ନିହିତ ଅଛି ।

***

ପ୍ରଶ୍ନ—ମୋର ପ୍ରିୟ ଜନନୀ ! ତୁ ତେବେ କ'ଣ କହୁଛୁ ଯେ ସ୍ଥୂଳ ଶରୀରରେ ତୋ ନିକଟକୁ ଯିବା—ଏହି କାମନାକୁ ମୋତେ ଅବଶ୍ୟ ଜୟ କରିବାକୁ ହେବ ।

ଉତ୍ତର—ମୁଁ ତ କେବେ ବି ଏପରି କୌଣସି କଥା କହି ନାହିଁ । ମାତ୍ର ମୁଁ କହୁଛି ତୁମକୁ ପ୍ରସ୍ତୁତ ହେବାକୁ ହେବ, ନିଜର

ଅନ୍ତଃକରଣକୁ ଶୁଦ୍ଧ କରିବାକୁ ହେବ, ଯାହାଦ୍ୱାରା ଏହି (ସାନ୍ନିଧ ପ୍ରାପ୍ତି) ମନୋଭାବ ତୁମ ପକ୍ଷରେ ଫଳପ୍ରଦ ହେବ ।

***

ଉତ୍ତର—ଯଦି ତୁ ଭାବୁଥାଉ ଯେ ମୁଁ କେବଳ ତୋ ନିମିତ୍ତ ଏଠାରେ ରହିଛି, ତେବେ ସ୍ପଷ୍ଟ ଭାବରେ ଏହି କଥା ଅହଂପୂର୍ଣ୍ଣ ଏବଂ ମିଥ୍ୟା ଅଟେ । ପରନ୍ତୁ ତୁ ଯଦି ଏହା ଭାବୁ କିମ୍ବା ବୁଝିଥାଉ ଯେ ମୁଁ ଏଠାରେ ମୋର ସମସ୍ତ ସନ୍ତାନମାନଙ୍କ ନିମିତ୍ତ ରହିଛି; ସେମାନଙ୍କୁ ନିଜର ହୃଦୟରେ ବହନ କରିଚାଲିଛି; ସେମାନଙ୍କୁ ଭଗବାନଙ୍କ ଆଡ଼କୁ ନେଇଯିବାକୁ ଚାହୁଁଛି ଆଉ ଯେତେବେଳେ ସେମାନେ ଭଗବାନଙ୍କଠାରୁ ଦୂରେଇ ଯାଉଛନ୍ତି ତେତେବେଳେ ମୋତେ ଖୁବ୍ ଆଘାତ ଲାଗୁଛି—ତେବେ, ଏକଥା ଏକ-ବାରେ ସତ୍ୟ ।

ମୋର ବିଲ୍‌କୁଲ୍ ଏପରି ଅଭିପ୍ରାୟ ନାହିଁ ଯେ ତୁ ମୋଠାରୁ ଦୂରରେ ରହ । ମୁଁ ତୋତେ କେବଳ ଏତିକି ସ୍ମରଣ କରାଇ ଦେବାକୁ ଚାହୁଁଛି ଯେ ଆଶ୍ରମରେ ତୁ ଏକୁଟିଆ ରହି ନାହୁଁ ଏବଂ ମୋତେ ନିଜର ସମୟ ସେହି ସକଳଙ୍କ ପାଇଁ ବାଣ୍ଟିବାକୁ ପଡ଼ିବ ଯେଉଁମାନେ ମୋତେ ଚାହାନ୍ତି ।

***

ଉତ୍ତର—ତୁ ଏହି ସ୍ଥୂଳ ଶରୀରରେ ମୋ ପାଖରେ ବସି ଅନ୍ୟ ଚିନ୍ତା କରିବା ଅପେକ୍ଷା ଯଦି ମୋଠାରୁ ଦୂରରେ ରହି ମଧ୍ୟ ସର୍ବଦା

ମୋ ଚିନ୍ତା କରୁ, ତେବେ ତୁ ନିଷ୍ଟୟହିଁ ମୋର ନିକଟତର ବୋଲି ଜାଣିବୁ ।

*
**

ପ୍ରଶ୍ନ—ମା, ଯଦି ମୁଁ ସ୍ଥୂଳ ଶରୀରରେ ତୁମଠାରୁ ଦୂରରେ ରହେ ତେବେ ମୁଁ ତୁମକୁ ମୋ ପାଖରେ ନିବିଡ଼ ଭାବରେ କିପରି ଅନୁଭବ କରିବି ?

ଉତ୍ତର—ନିଜର ମନ ଏବଂ ହୃଦୟର ଏକାଗ୍ରତାଦ୍ୱାରା ।

*
**

ପ୍ରଶ୍ନ—ମା, ଚବିଶ ଘଣ୍ଟାରେ ଗୋଟିଏ ଦିନ ହୁଏ । ମାତ୍ର ମୁଁ ସାରାଦିନ ଭିତରେ ତୋର ଚରଣତଳେ କେବଳ କେତେକ ସେକେଣ୍ଡ ମାତ୍ର ରହିପାରୁଛି, ଏପରି ଅବସ୍ଥାରେ ମୁଁ କିପରି ବଞ୍ଚିବି ?

ଉତ୍ତର—ନିଜର ଅନ୍ତରରେ ପ୍ରବେଶ କର, ନିଜର ଚୈତ୍ୟପୁରୁଷକୁ ପ୍ରାପ୍ତ କର, ତେବେହିଁ ତୁ ମୋତେ ତୋ ଅନ୍ତରରେ ବାସ କରୁଅଛି ବୋଲି ଜାଣିବୁ—ପ୍ରାଣର ପ୍ରାଣରୂପେ, ସତତ ବିଦ୍ୟମାନ, ସର୍ବଦା ସମୀପସ୍ଥ, ଅତି ସ୍ପଷ୍ଟରୂପେ ଓ ଜୀବନ୍ତ ଭାବେ ।

ଖୁବ୍ ଶାନ୍ତ ରହ ଏବଂ ଶ୍ରୀଅରବିନ୍ଦ ଏବଂ ମୋର ପ୍ରଭାବ ଆଡ଼କୁ ନିଜର ମସ୍ତିଷ୍କ ଏବଂ ହୃଦୟକୁ ଖୋଲି ଧର—ଆନ୍ତର

ମାଉବତାର (ଯାହା ସବୁ ଅବସ୍ଥାରେ ଏବଂ ସବୁ ପରିସ୍ଥିତିରେ ପାଇ ହୁଏ) ଗମ୍ଭୀରତାରେ ବୁଡ଼ଯାଅ । ସେହି ମାଉବତାର ମର୍ମସ୍ଥଳରୁ ମୋତେ ଆବାହନ କର, ତେବେହିଁ ତୁ ମୋତେ ତୋ ସତ୍ତାର କେନ୍ଦ୍ର ସ୍ଥଳରେ ବିଦ୍ୟମାନ ବୋଲି ଉପଲବ୍ଧି କରିବୁ ।

***

ଉତ୍ତର—ମୁଁ ଦୁଇଦିନ ପାଇଁ "ପ୍ରଣାମ" ବନ୍ଦ କରିଦେଇଛି । ସେଥିପାଇଁ ତୁ ଏହା ଭାବିବା ଉଚିତ ନୁହେଁ ଯେ ମୁଁ ତୋ ସଙ୍ଗରେ ନାହିଁ । ତୁ ଯେଉଁଠି ବି କାମ କର—ସ୍କୁଲଭୂମିରେ ତାହା ଦୂରରେ ହେଉ କିମ୍ବା ନିକଟରେ ହେଉ ମୁଁ ସର୍ବଦା ତୋ କାର୍ଯ୍ୟ ଓ ଚେତନା ସହିତ ଯୁକ୍ତ ରହିଛି । ତୁ ଏ କଥା ଜାଣିବା ଉଚିତ ।

***

ପ୍ରଶ୍ନ—ଯଦି ତୁ ମୋ ସଙ୍ଗରେ ରହିଛୁ ବୋଲି ମୁଁ ଅନୁଭବ ନ କରିପାରେ ତେବେ ମୋର ଜୀବନରେ କୌଣସି ମୂଲ୍ୟ ଅଥବା ଆକର୍ଷଣ ରହିବନି ।

ଉତ୍ତର—ମାତ୍ର ମୁଁ ସର୍ବଦା ତୋ ସାଥିରେ ରହିଛି ।

***

ପ୍ରଶ୍ନ—ମା, ମୋ ହୃଦୟକୁ ଶୂନ୍ୟ କରି ଦିଅ ନାହିଁ ।

ଉତ୍ତର—ମୁଁ ବରାବର ତୋ ହୃଦୟରେ ରହିଛି ।

ଚୈତ୍ୟପୁରୁଷ ନିରନ୍ତର ଏବଂ ଅପରିବର୍ତ୍ତିତଭାବେ ଭଗବାନଙ୍କ ସହ ସମ୍ପର୍କ ସ୍ଥାପିତ କରି ରହିଥାଏ ଏବଂ ଏହି ସମ୍ପର୍କ କେବେ ମଧ୍ୟ ଶୂନ୍ୟ ହୁଏ ନାହିଁ ।

ଭଗବାନ ଅବିରତ ଚୈତ୍ୟପୁରୁଷ ମଧ୍ୟରେ ବିଦ୍ୟମାନ ଏବଂ ଚୈତ୍ୟପୁରୁଷ ଏ ସମ୍ବନ୍ଧରେ ସମ୍ପୂର୍ଣ୍ଣ ସଚେତ ।

***

ପ୍ରଶ୍ନ—ମୋ ଭିତରେ ଚୈତ୍ୟପୁରୁଷ ସୁପ୍ତାବସ୍ଥାରେ ରହିଛି ।

ଉତ୍ତର—ଚୈତ୍ୟପୁରୁଷ ସୁପ୍ତ ରହି ନାହିଁ । ବାସ୍ତବରେ ତାହା ସହିତ ସମ୍ପର୍କ ଯଥାର୍ଥ ଭାବେ ସ୍ଥାପିତ ହୋଇନାହିଁ । କାରଣ ତୋ ମନ ବହୁତ ବେଶୀ ଗୋଳମାଳ କରୁଛି ଏବଂ ପ୍ରାଣ ମଧ୍ୟ ବହୁତ ଚଞ୍ଚଳ ।

***

ପ୍ରଶ୍ନ—ମା, ଯଦି ଚୈତ୍ୟପୁରୁଷ ସର୍ବଦା ଭଗବାନଙ୍କର ଉପସ୍ଥିତି ଅନୁଭବ କରେ, ତେବେ ପୁଣି ମନୁଷ୍ୟ ଏଥିପାଇଁ କାହିଁକି କନ୍ଦାକଟା ଓ ଦୁଃଖ କରେ ଯେ ସେ ତୋର ଉପସ୍ଥିତି ପ୍ରାପ୍ତ କରିପାରୁ ନାହିଁ ।

ଉତ୍ତର—ମୁଁ ତୋତେ ପ୍ରଥମରୁ କହିଛି ଯେ ଏହାର କାରଣ ହେଉଛି ବାହ୍ୟ ଚେତନା ଓ ଚୈତ୍ୟପୁରୁଷଙ୍କ ମଧ୍ୟରେ ଖୁବ୍ ଘନିଷ୍ଠ

ସମ୍ପର୍କ ସ୍ଥାପିତ ହୋଇନାହିଁ । ଯେଉଁ ବ୍ୟକ୍ତି ମଧ୍ୟରେ ଏହି ସମ୍ପର୍କ ଭଲଭାବରେ ସ୍ଥାପିତ ହୋଇସାରିଛି ସେ ସର୍ବଦା ପ୍ରସନ୍ନ ରହେ ।

***

ପ୍ରଶ୍ନ—ମୁଁ ଯେଉଁ କଷ୍ଟ ଭିତରେ ରହିଛି, ଏଥିରୁ ଏହାହିଁ ପ୍ରମାଣିତ ହେଉଛି ଯେ ମୋ ଚୈତ୍ୟପୁରୁଷ ଭଗବାନଙ୍କଠାରୁ ବହୁତ ଦୂରରେ ରହିଛନ୍ତି ।

ଉତ୍ତର—ଚୈତ୍ୟପୁରୁଷକୁ କୌଣସି କଷ୍ଟ ହୁଏ ନାହିଁ । ମନ, ପ୍ରାଣ ଏବଂ ଅଜ୍ଞାନ ମନୁଷ୍ୟର ସାଧାରଣ ଚେତନାକୁ କଷ୍ଟ ହୋଇ-ଥାଏ ।

***

ପ୍ରଶ୍ନ—ମା, ଦଶ ଏଗାର ବର୍ଷ ପୂର୍ବେ ମୋତେ ଆପଣଙ୍କର ସାନ୍ନିଧ୍ୟ ଓ ସହାୟତାଦ୍ୱାରା ଏକ ଅନୁଭୂତି ମିଳିଥିଲା । ମୁଁ ଗୋଟିଏ ବଡ଼ ବାଧାବନ୍ଧ ମଧ୍ୟରେ ବୁଡ଼ି ଯାଇଥିଲି ଏବଂ ମୋତେ ଏପରି ଲାଗୁଥିଲା ଯେ ମୁଁ ଏକବାରେ ନଷ୍ଟ ହୋଇଗଲି । ହଠାତ୍ ମୁଁ ଗୋଟିଏ ବିଷୟ ଅନୁଭବ କଲି : ମୋ ସତ୍ତାର ଗଭୀରତାରୁ ଏବଂ ସକଳ ବାଧାବନ୍ଧର ଭିଡ଼ ଭିତର ଦେଇ କୌଣସି ବସ୍ତୁ ଉପରକୁ ଉଠିଆସୁଥିଲା ଏବଂ ଯେତେବେଳେ ତାହା ପୂରା ଉପରକୁ ଉଠିଆସିଲା ହଠାତ୍ ମୋ ଭିତରଟା ପୁରାପୂରି ବଦଳି ଗଲା । ତାପରେ ମୁଁ ଏକ ପ୍ରକାର ଆନନ୍ଦ

ଓ ଶାନ୍ତ ଅନୁଭବ କରିବାକୁ ଲାଗିଲି ଏବଂ ସବୁ ପ୍ରକାର କଷ୍ଟ ସେହିକ୍ଷଣି ବିଲୀନ ହୋଇଗଲା । ସେହିଦିନଠାରୁ ମୋତେ ଏପରି କୌଣସି କଷ୍ଟ ଭିତରଦେଇ ଯିବାକୁ ପଡ଼ୁନାହିଁ, ଯାହା ମୋର ପଥ ରୋକିଦେବ । ମା, ତା କିପ୍ରକାର ଅନୁଭବ ଥିଲା ?

ଉତ୍ତର—ନିଃସନ୍ଦେହରେ ତାହା ଚୈତ୍ୟପୁରୁଷ ଥିଲା, ମାତ୍ର ତାହା କେବଳ ମୋର ହସ୍ତକ୍ଷେପଦ୍ୱାରା ସକ୍ରିୟ ହୋଇଉଠିଥିଲା ।

***

ଉତ୍ତର—ବର୍ତ୍ତମାନ ଯଦି ତୋର ଦୋଷତ୍ରୁଟିକୁ ତୋତେ ଦେଖାଇଦେବା କଥାକୁ ତୁ ଭଲ ନ ପାଉ ତେବେ ମୁଁ ତାହା ଏକବାରେ ବନ୍ଦ କରିଦେବି । ମାତ୍ର ତାପରେ ତୁ ସାଧନାରେ ଉନ୍ନତି ନିମିତ୍ତ ମୋତେ କିଛି ବି କହି ପାରିବୁ ନାହିଁ, କାରଣ ତୁ ଗୋଟିଏ ଦିଗରେ ମୋର ହସ୍ତକ୍ଷେପ କରିବାକୁ କହୁଛୁ ଏବଂ ଅନ୍ୟ ଦିଗରେ ତାହା ଅସ୍ୱୀକାର କରିବାକୁ ଚାହୁଁଛୁ ।

***

ଉତ୍ତର—ଯାହା କିଛି ମୁଁ ତୋତେ କହୁଛି ତଦ୍ୱାରା ଯଦି ତୁ ବିରକ୍ତ ହେଉ କିମ୍ବା ଚିଡ଼ୁଥାଉ ତେବେ ଏହା ବୁଝାଯିବ ଯେ ତୁ ଉନ୍ନତି କରିବାକୁ ଚାହୁଁ ନାହୁଁ । ଅତଏବ ତୋର କ

ପ୍ରକାର ପରିବର୍ତ୍ତନ ଆବଶ୍ୟକ ତାହା ତୋତେ କହିବାର କୌଣସି ଆବଶ୍ୟକତା ନାହିଁ ।

*
**

ପ୍ରଶ୍ନ—ମା, ମୁଁ ଜାଣୁଛି ଯେ ମୁଁ ଏକ ଅପଦାର୍ଥ, ତୁଚ୍ଛ ମନୁଷ୍ୟ । ମାତ୍ର ଆପଣ କ'ଣ ମୋତେ ପରିବର୍ତ୍ତିତ କରିଦେଇ ପାରିବେ ନାହିଁ !

ଉତ୍ତର—ମୁଁ ତୋର ପରିବର୍ତ୍ତନ ଦ୍ୱାରା ଖୁବ୍ ଖୁସି ହେବ । ମାତ୍ର ଏହା କ'ଣ ନିଶ୍ଚିତ ଯେ ତୋ ଭିତରେ ଯେଉଁ ତୁଚ୍ଛତା ରହିଛି ତାହା ବଦଳିବାକୁ ଚାହୁଁଛି ?

*
**

ଉତ୍ତର—ତୋର ଯଦି ମୋ ପ୍ରତି ବିଶ୍ୱାସ ନାହିଁ ତେବେ ତୁ ଏହା କିପରି ଆଶା କରୁଛୁ (ଚାହୁଁଛୁ) ଯେ ମୁଁ ତୋତେ ସହାୟତା କରିବ !

*
**

ପ୍ରଶ୍ନ—ଯଦି ଆପଣ ମୋର ସହାୟ ନ ହୁଅନ୍ତି ତେବେ ଏହି ସମ୍ବନ୍ଧ ଯାହା ଚିରନ୍ତନ ରହି ଆସିଛି ତାହା ମୁଁ କଦାପି ପ୍ରାପ୍ତ କରି ପାରିବ ନାହିଁ ।

ଉତ୍ତର—ମୋର ସହାୟତା ପୂର୍ଣ୍ଣମାତ୍ରାରେ ସର୍ବଦାହିଁ ରହିଛି । ତୋତେ କେବଳ ବିଶ୍ୱାସର ସହିତ ତା ଆଡ଼କୁ ନିଜକୁ ଖୋଲି ଧରିବାକୁ ହେବ ଏବଂ ତେବେହିଁ ତାହାକୁ ତୁ ପ୍ରାପ୍ତ କରି ପାରିବୁ ।

***

ଉତ୍ତର---ହଁ, ଭଗବତ୍ ବିରୋଧୀ ସମସ୍ତ କ୍ରିୟାକୁ ଜୟ କରିବାକୁ ମୋର ସହାୟତା ତୋ ସଙ୍ଗେ ସର୍ବଦାହିଁ ରହିଛି ।

***

ଉତ୍ତର—ତୋତେ ଗୋଟିଏ କୋଣରେ ପକାଇ ରଖିବାକୁ ମୋର ତିଳେ ହେଲେ ଇଚ୍ଛା ନାହିଁ ଏବଂ ଯଦି ମୋର ପୂର୍ଣ୍ଣ ବିଶ୍ୱାସ ନ ହୁଅନ୍ତା ଯେ ତୁ ସେହିସବୁ କଠିନତାକୁ ପାର କରିପାରିବୁ ନାହିଁ ତେବେ ମୁଁ ଏସବୁର ଉଲ୍ଲେଖ ବି କରନ୍ତି ନାହିଁ । "ତୋର ଏହିସବୁ ତ୍ରୁଟି ରହିଛି"—କାହାରିକୁ ଏହା କହିବାରେ କୌଣସି ଲାଭ ନାହିଁ ଯେପର୍ଯ୍ୟନ୍ତ ସେହି ଦୋଷକୁ ସୁଧାରିବାରେ ସେ ନିଜେ ସହାୟତା ନ କରିଛି ।

***

ପ୍ରଶ୍ନ—ଆଜି ସକାଳେ ମୁଁ ଭାବିଥିଲି ଯେ ଆପଣଙ୍କ ଆଡ଼ୁ ମୋତେ ଆହୁରି ଏକ ଆଘାତ ମିଳିବ ।

ଉତ୍ତର—ତୋତେ ଆଘାତ ଦେବାଭଳି କାରଣ ମୁଁ ଦେଖୁ ନାହିଁ । କାହାରିକୁ କେବଳ ଆଘାତ ଦେବାରେ ସୁଖ ଥାଏ ବୋଲି ମୁଁ ଆଘାତ ଦିଏ ନାହିଁ, କେବଳ ସେତେବେଳେ ଆଘାତ ଦେବାକୁ ବାଧ୍ୟ ହୋଇଥାଏ ଯେତେବେଳେ ତାହା ଅନିବାର୍ଯ୍ୟ ହୁଏ ।

***

ପ୍ରଶ୍ନ—ମୋର ସମସ୍ତ ଜୀବନ ଆପଣଙ୍କ ପାଖରେ ନିଃଶେଷରେ ସମର୍ପିତ ହୋଇଛି । ମୁଁ ପୂର୍ଣ୍ଣ ଭାବରେ 'ଶାନ୍ତ' ରହିବ ଏବଂ ମୁଁ ଚିନ୍ତିତ ନୁହେଁ ଯେ ମୋର କ'ଣ ହେଉଛି ।

ଉତ୍ତର—ବାଃ ! ଏହା ତ ସବୁଠାରୁ ଉତ୍ତମ କଥା । ମାତ୍ର ତୁ ଯଦି ଏହି କଥା ସହିତ ସେହି ଭାବନାକୁ ଯୋଡ଼ିଦିଅନ୍ତୁ ଯେ ତୁ ସ୍ୱୟଂ ନିଜେ ନିଜକୁ ଯେତିକି ଜାଣିଛୁ ଏବଂ ଭଲ ପାଉଛୁ ତାଠାରୁ ବହୁ ଅଧିକ ଭାବେ ମୁଁ ତୋତେ ଜାଣିଛି ଏବଂ ଭଲ ପାଉଛି ଏବଂ ଉତ୍ତମରୂପେ ଜାଣିଛି ଯେ ତୋ ନିମିତ୍ତ ଭଲ କ'ଣ ଓ ମନ୍ଦ କ'ଣ । ତେବେ ଏହା ସବୁଠାରୁ ଉତ୍ତମ ହେବ ।

***

ପ୍ରଶ୍ନ—ହେ ଆନନ୍ଦମୟୀ ମା, ମୁଁ ଏକଥା ଜାଣି ବଡ଼ ଆଶ୍ଚର୍ଯ୍ୟ ହେଉଛି ଯେ ଏପରି ଲୋକ ଅଛନ୍ତି ଯେଉଁମାନେ ଧାରଣା କରୁ-ଛନ୍ତି ଯେ କେବଳ ସେହିମାନଙ୍କୁ ଆପଣ ନିଜ ପାଖକୁ ଡାକୁଛନ୍ତି ଯେଉଁମାନେ ଦୂରରୁ ଆପଣଙ୍କ କୃପା ଲାଭ କରିବାରେ ଅକ୍ଷମ;

ଆଜି ଯେଉଁମାନେ ଆପଣଙ୍କ ସହିତ ବହୁତ ସମୟରେ ଦେଖା କରନ୍ତି, ସେମାନେ ଦୁର୍ବଳ ।

ଉତ୍ତର—ଲୋକେ କ'ଣ ଧାରଣା କରୁଛନ୍ତି ବା କହୁଛନ୍ତି ତା ଉପରେ ଧ୍ୟାନ ଦିଅ ନାହିଁ । ପ୍ରାୟ ତାହା ସର୍ବଦାହିଁ ଅଜ୍ଞାନତାଭରା ମୂର୍ଖତାର ପରିଚାୟକ ।

ମୁଁ ଏହା ଦେଖି ପ୍ରାୟ ବିସ୍ମିତ ହୁଏ ଲୋକେ କପରି କଳ୍ପନା କରନ୍ତି ଯେ ସେମାନେ ମୋ କାର୍ଯ୍ୟର ଯଥାର୍ଥ କାରଣ ଜାଣି ପାରୁଛନ୍ତି; ମୁଁ -ପ୍ରତ୍ୟେକ ବ୍ୟକ୍ତି ପାଇଁ ତାହାର ଅବସ୍ଥାର ଆବଶ୍ୟକତାନୁସାରେ ପୃଥକ୍ ପୃଥକ୍ ଢଙ୍ଗରେ କାର୍ଯ୍ୟ କରିଥାଏ ।

***

ପ୍ରଶ୍ନ—ମୋର ଧାରଣା ଯେ ଯେଉଁସବୁ କମ୍ପନ ବାହାର ମୋ ଭିତରେ ଦୃଢ଼ ରହିଛି ତାହା ଖରାପ ହେଉ କିମ୍ବା ଭଲ ହେଉ ତାକୁ ଆପଣଙ୍କ ଆଗରେ ରଖିବାଦ୍ୱାରା କୌଣସି କ୍ଷତି ହେବ ନାହିଁ ।

ଉତ୍ତର—ବରଂ ତାହା ମୋତେ ଶୀଘ୍ର କହିଦେବା ଭଲ ।

***

ଉତ୍ତର—ବନ୍ଦଥିବା ଦ୍ୱାରକୁ ଖୋଲିଦେବା ନିମିତ୍ତ ନିଜ ଦୋଷସ୍ୱୀକାର କରିବାଭଳି ଭଲ ବିଷୟ ଆଉ କିଛି ନାହିଁ । ଯାହା ମୋତେ

କହିବାକୁ ସବୁଠାରୁ ବେଶୀ ଭୟ ହେଉଛି ତାହା ମୋତେ କହି ଦେ; ତଦ୍ୱାରା ତୁ ଖୁବ୍ ଶୀଘ୍ର ମୋର ନିକଟତର ହୋଇଛୁ ବୋଲି ଅନୁଭବ କରିବୁ ।



( ୪ )

ଉତ୍ତର—ଭଗବାନ ହେଉଛନ୍ତି ଅନନ୍ତ ଏବଂ ଅସଂଖ୍ୟ । ତେଣୁ ତାଙ୍କ ପାଖରେ ପହଞ୍ଚିବାର ଉପାୟ ମଧ୍ୟ ଅନନ୍ତ ଏବଂ ଅସଂଖ୍ୟ । ପ୍ରତ୍ୟେକ ବ୍ୟକ୍ତି ଯେଉଁ ଭାବରେ ଏବଂ ଯେଉଁ ଉପାୟରେ ଭଗବାନଙ୍କୁ ଖୋଜେ ସେ ସେହି ଭାବରେ ତାଙ୍କୁ ପାଇଥାଏ ଏବଂ ତାଙ୍କୁ ଜାଣିଥାଏ । ଭକ୍ତ ପ୍ରେମପୂର୍ଣ୍ଣ କରୁଣାମୟ ଭଗବାନଙ୍କୁ ପାଇଥାଏ । ଜ୍ଞାନୀ ଜ୍ଞାନ ଏବଂ ପ୍ରଜ୍ଞାପୂର୍ଣ୍ଣ ଭଗବାନଙ୍କୁ ପ୍ରାପ୍ତ ହୁଏ । ଯେ ତାଙ୍କୁ ଭୟ କରେ ସେ ଏକ କଠୋର ଭଗବାନଙ୍କର ସମ୍ମୁଖୀନ ହୁଏ ଏବଂ ଯାହାର ହୃଦୟରେ ଭଗବାନଙ୍କ ପ୍ରତି ବିଶ୍ୱାସ ଜନ୍ମେ ସେ ତାଙ୍କୁ ମିତ୍ର ଏବଂ ରକ୍ଷକରୂପେ ପାଇଥାଏ......ଏବଂ ଏହିଭଳି ସମ୍ଭାବନାଗୁଡ଼ିକମଧ୍ୟରେ ଅନନ୍ତ ବୈଚିତ୍ର୍ୟ ରହିଛି ।

*
**

ଉତ୍ତର—କୌଣସି ବସ୍ତୁ ପ୍ରତି ଭୟ ରଖ ନାହିଁ । ଭଗବାନ ପ୍ରତ୍ୟେକ ଦୃଢ଼ ଅଭୀପ୍ସାର ଉତ୍ତର ବରାବର ଦେଇଥା'ନ୍ତି

ଏବଂ ତାଙ୍କୁ ଯାହାକିଛି ପୂର୍ଣ୍ଣ ପ୍ରାଣରେ ସମର୍ପଣ କରାଯାଏ ତାକୁ ସେ କେବେ ହି ଅସ୍ୱୀକାର କରନ୍ତି ନାହିଁ । ତେଣୁ ତୁ ନିଶ୍ଚିନ୍ତ ହୋଇ ଶାନ୍ତିରେ ରହ; କାରଣ ଭଗବାନ ତୋତେ ସ୍ୱୀକାର କରିଛନ୍ତି ।

*
**

ପ୍ରଶ୍ନ—ପୂଜ୍ୟା ଜନନୀ, ଯେଉଁ ତାମସିକତାଦ୍ୱାରା ମୁଁ ଆବୃତ ତାକୁ କିପରି ଜୟ କରିବି ? ମୁଁ କୌଣସି ପ୍ରକାରେ ବଞ୍ଚି ରହିଛି ସତ, ମାତ୍ର ମୋର ଜୀବନ ଜୀବନ ହୋଇ ନାହିଁ । ମା, ମୁଁ ଏପରି କିଛି ଚାହୁଁଛି, ଯାହା ମୋର ମନକୁ ଅନ୍ୟଦିଗରେ ନେଇଯିବ, ଯାହା ମୋର ହୃଦୟକୁ ସାନ୍ତ୍ୱନା ଦେବ ।

ଉତ୍ତର—ନିଶ୍ଚୟ; ମନର ଏପରି ସ୍ଥିତିରେ ଏହା କେବେ ହି ସମ୍ଭବ ନୁହେଁ ଯେ ତୁ ଭାଗବତ ଉପସ୍ଥିତିକୁ ପାଇବାକୁ ଆଶା କରିବୁ । ମନକୁ ପରିବର୍ତ୍ତନ କରିବା ପାଇଁ ନିଜର ହୃଦୟକୁ ନିରର୍ଥକ ଭାବନାରେ ଭରିବା ସ୍ଥଳରେ ବଡ଼ ଆଗ୍ରହର ସହିତ ତାହାକୁ ଶ୍ରେଷ୍ଠବଡ଼ ସବୁ ପ୍ରକାର ବିଷୟରୁ ଶୂନ୍ୟ ଅର୍ଥାତ୍ ଧାରଣାମାନଙ୍କରେ ଖାଲି କରିଦିଅ, ଯେପରି ଏହି ମହାନ୍ ଶୂନ୍ୟ-ତାର ଶକ୍ତି ସେହି ଅପରୂପ ଦିବ୍ୟ ଉପସ୍ଥିତିକୁ ଆକର୍ଷଣ କରି ପାରେ । ଆମକୁ ସେହି ପରମ-କୃପାଶକ୍ତିକୁ ତାହାର ଉପଯୁକ୍ତ ମୂଲ୍ୟଦାନ କରିବାକୁ ଶିଖିବାକୁ ହେବ ।

*
**

ଉତ୍ତର—ପ୍ରତ୍ୟେକ ବ୍ୟକ୍ତିଠାରୁ କେବଳ ଏହି ଜିନିଷ ଆଶା କରା-
ଯାଇଥାଏ ଯେ ଯାହା ତାହାର ନିଜସ୍ୱ କିମ୍ବା ସେ ନିଜେ
ଯାହା, ତାଠାରୁ ଅଧିକ କିଛି ନୁହେଁ କିମ୍ବା ତାଠାରୁ କମ୍
ମଧ୍ୟ ନୁହେଁ ।

*
* *

ଉତ୍ତର—ତୁ ନିଜ ଭିତରେ ଯେଉଁ ଶୂନ୍ୟତା ଆସିବାକୁ ଚାହୁଁଛୁ
ତାହା ଭଲ କଥା, କାରଣ ତୁ ଶୀଘ୍ର ବୁଝିପାରିବୁ ଯେ ଏହି
ଶୂନ୍ୟତାର ଗଭୀରରେ ଭଗବାନ ବିଦ୍ୟମାନ ।

*
* *

ପ୍ରଶ୍ନ—ଯଦି ମୁଁ କୌଣସି ବସ୍ତୁରୁ କିଛି ସାନ୍ତ୍ୱନା ପାଏ; ତେବେ
କିପରି କହିବି ଯେ କୌଣସି ବସ୍ତୁ ମୋତେ ସହାୟ ହେଉ
ନାହିଁ, ଆଉ ମୁଁ ଏକ ପୂର୍ଣ୍ଣ ଶୂନ୍ୟତା ମଧ୍ୟଦେଇ ଦିବ୍ୟ ଜୀବ-
ନର ଗଭୀରତା ଭିତରକୁ ପ୍ରବେଶ କରୁଛି ?

ଉତ୍ତର—ସେହି "ଅଖଣ୍ଡ ଶୂନ୍ୟତା" କୌଣସି ସଦ୍‌ବସ୍ତୁ ନୁହେଁ,
ମାତ୍ର ତାହା ଗୋଟାଏ ରୂପକ ମାତ୍ର । ତାମସିକତାର ନିଦ୍ରା-
ଳୁତା ବଦଳରେ କୌଣସି ଉଚ୍ଚତର ଅଭୀପ୍ସାଦ୍ୱାରା ହୃଦୟକୁ
ପୂର୍ଣ୍ଣ ରଖିବା ଉଚିତ ।

*
* *

ପ୍ରଶ୍ନ—ଯେତେବେଳେ ମୁଁ ନିଜ ଭିତରକୁ ଦୃଷ୍ଟିପାତ କରିବାକୁ ଚେଷ୍ଟା କରେ ସେତେବେଳେ ସେଠାରେ ଏପରି ଏକ ସତ୍ତାର ସନ୍ଧାନ ପାଏ ଯାହା ସକଳ ବସ୍ତୁପ୍ରତି ଅନାସକ୍ତ; ତାଛଡ଼ା ସେଠାରେ ଏକ ଚରମ ଉଦାସୀନତାହିଁ ବିଦ୍ୟମାନ ।

ଉତ୍ତର—'ଉଦାସୀନତା' ଆଧ୍ୟାତ୍ମିକ ବିକାଶମାର୍ଗରେ ଏପରି ଏକ ସ୍ତର ଯାହା ବ୍ୟକ୍ତିକୁ ଅନ୍ତରାତ୍ମାର ପୂର୍ଣ୍ଣ ସମତା ଆଡ଼କୁ ନେଇଯାଏ ।

*
**

ପ୍ରଶ୍ନ—ମା, ମୋର ଜୀବନ ବଡ଼ ନୀରସ । ତାହା ସବଦାହିଁ ଏହିପରି ଥିଲା । ଆଜି ମୋର ଜୀବନର ଏହି ନୀରସତା ଅଧିକରୁ ଅଧିକ ବଢ଼ିଚାଲିଛି ।

ଉତ୍ତର—ଏପରି ଅବସ୍ଥା କୌଣସି ବାହାର ପରିସ୍ଥିତି ଉପରେ ନିର୍ଭର କରେ ନାହିଁ, ଭିତର ସ୍ଥିତି ଉପରେ ନିର୍ଭର କରେ । ଏହାର କାରଣ ତୁ ତୋ ମନର ନିତାନ୍ତ ଉପର ଭାଗରେ ବାସ କରୁ । ତୋତେ ତୋ ଚେତନାର ଏକ ଗଭୀରତାକୁ ପ୍ରାପ୍ତ କରିବାକୁ ଏବଂ ତା ମଧ୍ୟରେ ବାସ କରିବାକୁ ଚେଷ୍ଟା କରିବା ଉଚିତ ।

*
**

ଉତ୍ତର—ଏହା ନିଃସନ୍ଦେହ ଯେ ଉଦାସ ଏବଂ ବିଷଣ୍ଣତାକୁ ସ୍ଥାନ ଦେବାଦ୍ୱାରା କେହି କେବେ ଭଗବାନଙ୍କୁ ପ୍ରାପ୍ତ ହୁଏ ନାହିଁ ।

ମନୁଷ୍ୟ ସର୍ବଦା ନିଜର ହୃଦୟରେ ଅଟଳ ବିଶ୍ୱାସ ଓ ନିର୍ଭରତା ବଜାୟ ରଖିବା ଉଚିତ, ଏବଂ ମନରେ ବିଜୟପ୍ରାପ୍ତିର ନିଶ୍ଚୟତା ରଖିବା ଉଚିତ । ଯେଉଁ ଅନ୍ଧକାର ତୋ ଓ ମୋ ଭିତରେ ଆସିଯାଇଛି ଏବଂ ତୋଠାରୁ ମୋତେ ଅଦୃଶ୍ୟ କରି ରଖିଛି ତାକୁ ଦୂରକୁ ହଟେଇ ଦେ । କେବଳ ଦୃଢ଼ ନିଶ୍ଚୟତାର ବିଶୁଦ୍ଧ ପ୍ରକାଶରେ ତୁ ମୋର ଉପସ୍ଥିତି ସମ୍ବନ୍ଧରେ ସଚେତନ ହୋଇପାରିବୁ ।

***

ଉତ୍ତର—ତୁ ଯେତିକି ଅଧିକ ବିଷଣ୍ଣ ହେବୁ ଏବଂ ଯେତିକି ଅଧିକ ବିଳାପ କରିବୁ, ସେତିକି ଅଧିକ ମୋଠାରୁ ଦୂରେଇ ଯିବୁ । ଭଗବାନ ବିଷଣ୍ଣ ନୁହନ୍ତି, ଏବଂ ତାଙ୍କୁ ପାଇବା ନିମିତ୍ତ ତୋର ସମସ୍ତ ବିଷଣ୍ଣତା ଏବଂ ହୃଦୟର ସମସ୍ତ ଭାବପ୍ରବଣତାକୁ ଦୂରକୁ ଫିଙ୍ଗି ଦେବାକୁ ହେବ ।

***

ପ୍ରଶ୍ନ—ପ୍ରିୟ ଜନନି ! ମୁଁ ଖୁବ୍ ପ୍ରସନ୍ନ ରହୁଛି, କାରଣ ମୁଁ ଆପଣଙ୍କୁ ଭଲ ପାଏ ଏବଂ ଏହି ଭଲପାଇବାରେ କିଛି କଷ୍ଟ ମଧ୍ୟ ସହିବାକୁ ପଡ଼ୁଛି ।

ଉତ୍ତର—ତୋର ଏହି କଷ୍ଟ ପାଇବାର କୌଣସି ଆବଶ୍ୟକତା ଅଛି ବୋଲି ମୁଁ ମନେ କରୁନାହିଁ । ଚୈତ୍ୟପୁରୁଷଙ୍କ ପ୍ରେମ ସର୍ବଦା ଶାନ୍ତ ଏବଂ ଆନନ୍ଦମୟ । କେବଳ ପ୍ରାଣପୁରୁଷ ନାଟକୀୟ

ଦୃଶ୍ୟ ପ୍ରଦର୍ଶନ କରେ ଏବଂ ବିନା କାରଣରେ ଦୁଃଖ ପାଏ; ସେଇଥିପାଇଁ ମୁଁ ଆଶା କରୁଛି ତୁ ଶୀଘ୍ର ମୋର ସାନ୍ନିଧ୍ୟ ସମ୍ବନ୍ଧରେ ଖୁବ୍ ଭଲ ଭାବରେ ସଚେତନ ହୋଇ ପାରିବୁ, ଯାହା ତୋ ପାଖରେ ଅଟଳ ରହିଛି; ଏବଂ ଏହି ସାନ୍ନିଧ୍ୟ ତୋତେ ଶାନ୍ତି ଓ ଆନନ୍ଦ ଦେବ ।

*
**

ପ୍ରଶ୍ନ—ମୋର ପରମ ପ୍ରିୟ ମା ! ଆପଣଙ୍କ ଓ ମୋ ମଝିରେ ଏକ ଭୟାବହ ଗଭୀର ଖାଇ ଭଳି ପୃଥକତାର ଭାବନା ବିଦ୍ୟମାନ । ମୁଁ ସନ୍ତୁଷ୍ଟ ହୋଇ ପାରୁନି । ଏପରି ଅସନ୍ତୋଷର କାରଣ କ’ଣ ?

ଉତ୍ତର—ପ୍ରାଣପୁରୁଷହିଁ ସଦାସର୍ବଦା ଅଭିଯୋଗ ଏବଂ ବିରୋଧ କରେ । ଚୈତ୍ୟପୁରୁଷ ଧୀରସ୍ଥିର ଭାବରେ ଓ ଉତ୍ସାହର ସହିତ ନିରନ୍ତର କାମ କରି ଚାଲିଥାଏ ଯେପରି ଏକତା ସ୍ଥାପିତ ହୋଇପାରିବ; ମାତ୍ର ସେ କେବେ ବି ଅଭିଯୋଗ କରେ ନାହିଁ ଏବଂ ସିଦ୍ଧିର ମୁହୂର୍ତ୍ତ ପର୍ଯ୍ୟନ୍ତ ପ୍ରତୀକ୍ଷା କରିବାକୁ ଜାଣିଥାଏ ।

*
**

ଉତ୍ତର—ବାସ୍ତବରେ ଏ ପ୍ରାଣର ଚାହିଦାରେ ଶେଷ ନାହିଁ ! ଏତେ ଚାହିଁଲା ପରେ ବି ସେ କେବେହେଲେ ସନ୍ତୁଷ୍ଟ ହୋଇପାରେ ନାହିଁ । ଚୈତ୍ୟସତ୍ତା, ହୃଦୟର ପ୍ରକୃତ ଗଭୀର ଭାବନାଗୁଡ଼ିକ

ସର୍ବଦା ସନ୍ତୁଷ୍ଟ ରହନ୍ତୁ ଏବଂ କେବେ କୌଣସି ବସ୍ତୁ ପାଇବାକୁ ଦାବୀ କରନ୍ତୁ ନାହିଁ । ଚେଷ୍ଟାପୂର୍ବକ ନିରନ୍ତର ମୋର ଉପସ୍ଥିତିକୁ ଅନୁଭବ କରନ୍ତୁ ଏବଂ ମୋର ପ୍ରେମ ଓ ଶୁଭ ସାନ୍ନିଧ୍ୟକୁ ଭଲଭାବରେ ବୁଝିପାରନ୍ତୁ, ଏବଂ ସର୍ବଦାହିଁ ଶାନ୍ତ, ପ୍ରସନ୍ନ ଓ ସନ୍ତୁଷ୍ଟ ରହନ୍ତୁ ।

ମୋର ଆଶୀର୍ବାଦସହ ।

*
**

ଉତ୍ତର—ଖୋଜିବାରେ ଏକ ପ୍ରକାର ଆନନ୍ଦ ମିଳେ; ପ୍ରତୀକ୍ଷା ଏବଂ ଅଭୀପ୍ସାରେ ମଧ୍ୟ ଏକ ପ୍ରକାର ଆନନ୍ଦ ମିଳେ । ଅନ୍ତତଃ ପ୍ରାପ୍ତି ଦ୍ୱାରା ଯେଉଁ ମହାନ୍ ଆନନ୍ଦ ମିଳେ, ତାହାଠାରୁ ଏହା କିଛି ବି କମ୍ ନୁହେଁ ।

*
**

ଉତ୍ତର—ବାସ୍ତବରେ ଶୁଦ୍ଧ ଏବଂ ନିଃସ୍ୱାର୍ଥ ପ୍ରେମଠାରୁ ଅଧିକ ସୁଖ ପ୍ରଦାନ କରିବାର କୌଣସି ବସ୍ତୁ ନାହିଁ ।

*
**

ଉତ୍ତର—ପ୍ରକୃତ ଦିବ୍ୟପ୍ରେମ ସମସ୍ତ କଳହ ଓ ଅଶାନ୍ତିର ବହୁ ଊର୍ଦ୍ଧ୍ୱରେ । ଏହା ଅପରିବର୍ତ୍ତନୀୟ ଆନନ୍ଦ ଏବଂ ଶାନ୍ତି ମଧ୍ୟରେ ପୂର୍ଣ୍ଣ ଏକତ୍ୱର ଅନୁଭବ ଅଟେ ।

*
**

ଉତ୍ତର—ରାଧା ହେଉଛନ୍ତି ଭଗବାନଙ୍କ ପ୍ରତି ପ୍ରେମପୂର୍ଣ୍ଣ ଆତ୍ମ-ନିବେଦନର ପ୍ରତୀକ ।

***

ଉତ୍ତର—ମନର ସମତ୍ୱ ଏବଂ ଶାନ୍ତ ପ୍ରସନ୍ନ ଭାବ ସଦାସର୍ବଦା ବଜାୟ ରଖ । କେବଳ ଏହି ଭାବରେ ତୁ ଯଥାର୍ଥ ଏକତ୍ୱ ପ୍ରାପ୍ତ କରିପାରିବୁ ।

***

ଉତ୍ତର—ଏକମାତ୍ର ତୋର ଅନ୍ତରାତ୍ମାରେହିଁ 'ଶାନ୍ତି' ନିବାସ କରି ରହିଛି ଏବଂ ସଂକ୍ରମଣ ଦ୍ୱାରା ତାହା ତୋର ସମସ୍ତ ସତ୍ତାରେ ବ୍ୟାପିଯାଏ । ମାତ୍ର ତାହା ସ୍ଥାୟୀ ହୁଏ ନାହିଁ । କାହିଁକି ନା ଏପର୍ଯ୍ୟନ୍ତ ତୋର ସମସ୍ତ ସତ୍ତା ଉପରେ ଅନ୍ତରାତ୍ମାର ରାଜ୍ୟ ନିଶ୍ଚିତ ରୂପେ ସ୍ଥାପିତ ହୋଇନାହିଁ ।

***

ଉତ୍ତର—ଭାବପ୍ରବଣ ନ ହେବାରେ କିଛି ଖରାପ ଥିବା ମୁଁ ଦେଖୁ ନାହିଁ । କାରଣ ଅଯଥା ଭାବପ୍ରବଣତାଠାରୁ ବଳି ଅନ୍ୟ କୌଣସି ବସ୍ତୁ ପ୍ରକୃତ ଦିବ୍ୟ ପ୍ରେମଠାରୁ ଅଧିକ ଦୂରରେ ନାହିଁ ।

***

ପ୍ରଶ୍ନ—ମା ! ଯାହା ହେବାର କଥା ହେବ, କିନ୍ତୁ କାହିଁକି ମୋର ହୃଦୟ ଅଧିକରୁ ଅଧିକ କଠୋର ଏବଂ ରୁକ୍ଷ ହୋଇ ଯାଉଛି ?

ଉତ୍ତର—ଏହା କ'ଣ ତୁ ସ୍ପଷ୍ଟ ଜାଣୁଛୁ ଯେ ତୋର ହୃଦୟ ରୁକ୍ଷ ଏବଂ କଠୋର ହୋଇଯାଉଛି ? ଭାବପ୍ରବଣତାର ଅଭାବକୁ ଅର୍ଥାତ୍ ଦୁର୍ବଳ ଓ ଭାସମାନ ଆବେଗର ଅଭାବକୁ ତୁ ଏପରି ରୁକ୍ଷ ଏବଂ କଠୋର ହେବା କଥା କହୁନାହୁଁ ତ ?

ଅସଲ ପ୍ରେମ ନିଜର ତୀବ୍ରତାରେ ଅତ୍ୟନ୍ତ ଗମ୍ଭୀର ଏବଂ ବହୁତ ଶାନ୍ତ ବସ୍ତୁ ଅଟେ । ତାହା ବାହାରର ଘଟଣା ସ୍ରୋତଦ୍ୱାରା ହୁଏତ ନିଜକୁ ବ୍ୟକ୍ତ କରି ନପାରେ ।

*
**

ଉତ୍ତର—ପ୍ରେମ କରିବାର ଅର୍ଥ ଅଧିକାର ନୁହେଁ, ବରଂ ନିଜେ ନିଜକୁ ଅର୍ପଣ କରିଦେବା ।

*
**

ପ୍ରଶ୍ନ—ମୁଁ ଅନ୍ୟ କାହାରି ପ୍ରତି କୌଣସି ପ୍ରକାର ଦୁର୍ଦ୍ଧାନ୍ତ ଏବଂ ସଂଯମହୀନ ପ୍ରେମ ଅନୁଭବ କରିନାହିଁ । କୌଣସି ବ୍ୟକ୍ତି କେବେ ମଧ୍ୟ ମୋତେ ଆକର୍ଷଣ କରେ ନାହିଁ । ଆଉ ସେଇଥିପାଇଁ ମୁଁ ଆପଣଙ୍କୁ କହୁଛି ଯେ ମୁଁ ସମସ୍ତ ପ୍ରକାର ମାନବିକ ଭାବାନୁଭୂତିକୁ ହରାଇ ବସିଛି ।

ଉତ୍ତର—ଏହାକୁ ଏକ କ୍ଷତି ବୋଲି କୁହାଯାଇ ପାରିବ ନାହିଁ । ବରଂ ମୁଁ ତାକୁ ଏକ ପ୍ରକାର ଅମୂଲ୍ୟ ଲାଭ ବୋଲି ମନେ କରୁଛି ।

*
**

ପ୍ରଶ୍ନ—ଅଧିକ ଶକ୍ତିଶାଳୀ ପ୍ରେମ ବ୍ୟକ୍ତିକୁ ତାର ପ୍ରେମାସ୍ପଦ ନିକଟରେ କ୍ରୀତଦାସ କରି ଦେଇପାରେ ।

ଉତ୍ତର—ତୁ ଏଠାରେ ପ୍ରାଣିକ ପ୍ରେମର କଥା କହୁଛୁ । ଏହା ନିଶ୍ଚିତରେ ଚୈତ୍ୟପ୍ରେମର କଥା ନୁହେଁ ଏବଂ ଭଗବତ ପ୍ରେମ-ଠାରୁ ଏହା ଆହୁରି ଅନେକ ଦୂରର କଥା ।

*
**

ପ୍ରଶ୍ନ—ଯେଉଁ ବ୍ୟକ୍ତିକୁ ମୁଁ ପ୍ରେମ କରୁଛି ସେ ମୋର ।

ଉତ୍ତର—ଏହା ନିହାତି ହୀନ ଏବଂ ଅହଙ୍କାରପୂର୍ଣ୍ଣ ପ୍ରେମ ।

*
**

ଉତ୍ତର—ଯାହା ସହିତ ପ୍ରେମ ହେଉନା କାହିଁକି ଏହି ଆଶ୍ରମ ପ୍ରେମ କରିବାର ସ୍ଥାନ ନୁହେଁ । ଯଦି ତୁ ଏପରି ମୂର୍ଖତାକୁ ପ୍ରଶ୍ରୟ ଦେବାକୁ ଚାହୁଁଥାଉ ତେବେ ଏଠାରୁ (ଆଶ୍ରମରୁ) ଚାଲିଯାଇ ଅନ୍ୟ କେଉଁଠି ତାହା କରିପାରୁ ମାତ୍ର ଏଠାରେ ନୁହେଁ ।

*
**

ଉତ୍ତର—ଏହି ପ୍ରାଣିକ ପ୍ରେମ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତି ଅର୍ଥାତ୍ ଏହା କିମ୍ବା ତାହା ପ୍ରତି ଆକର୍ଷଣ ନୁହେଁ...... ଏହା ହେଉଛି ନିମ୍ନ ପ୍ରକୃତିରେ ବିଦ୍ୟମାନ ଶାଶ୍ୱତ ନାରୀସତ୍ତା ଯାହା ନିମ୍ନ ପ୍ରକୃତିରେ ବିଦ୍ୟମାନ ଶାଶ୍ୱତ ପୁରୁଷସତ୍ତାକୁ ଆକର୍ଷଣ କରିଥାଏ ଏବଂ ମନରେ ଏକ ପ୍ରକାରର ଭ୍ରମ ଉତ୍ପନ୍ନ କରିଥାଏ । ଏହା ହେଉଛି ଏକ ପ୍ରକାର ବଡ଼ ଧରଣର ଖେଳ, ଅଧ୍ୟାତ୍ମ, ଅଶୁଦ୍ଧ ପ୍ରକୃତିର ଏକ ଅନ୍ଧକାରପୂର୍ଣ୍ଣ ତଥା ଅର୍ଦ୍ଧଚେତନ ଖେଳ । ଆଉ ଯେତେବେଳେ ମନୁଷ୍ୟ ଏହାର ଅନ୍ଧକାରମୟ ପ୍ରଚଣ୍ଡ ଘୂର୍ଣ୍ଣି ଭିତରୁ ବାହାରି ଆସିବାରେ ସକ୍ଷମ ହୁଏ ସେତେବେଳେ ସେ ଅତିଶୀଘ୍ର ଅନୁଭବ କରେ ଯେ ସମସ୍ତ କାମନା ତଥା ସବୁ ପ୍ରକାର ଆକର୍ଷଣ ଲୁପ୍ତ ହୋଇଯାଇଛି । ଆଉ ବଞ୍ଚିରହିଛି କେବଳ ମାତ୍ର ଭଗବାନଙ୍କ ପାଇଁ ଏକ ପ୍ରବଳ ଅଭୀପ୍ସା ।

⁂

ପ୍ରଶ୍ନ—ମୋର ପରମ ପୂଜ୍ୟା ଜନନୀ ! ଆଜି ସମସ୍ତ ଦିନ ଧରି ମୁଁ ଏହି "ଲାଲ ଗୋଲାପ" ଛଡ଼ା ଅନ୍ୟ କୌଣସି କଥା ଚିନ୍ତା କରିନାହିଁ, ଯାହାର ଆଧ୍ୟାତ୍ମିକ ଅର୍ଥ ହେଉଛି, ମାନବିକ ଆବେଗର ଭଗବାନଙ୍କ ପ୍ରତି ପ୍ରେମରେ ପରିବର୍ତ୍ତନ । ମୁଁ ଠିକ୍ ଠିକ୍ ଏହା ଜାଣିବାକୁ ଚାହୁଁଛି ଯେ ମାନବିକ ଆବେଗ କି ବସ୍ତୁ ?

ଉତ୍ତର—ସମସ୍ତ ପ୍ରକାର ତୀବ୍ର କାମନାଗୁଡ଼ିକୁ "ଆବେଗ" କୁହା-ଯାଏ । ଯେଉଁ କାମନାଗୁଡ଼ିକ ବ୍ୟକ୍ତି ଉପରେ ନିଜର ଅଧିକାର ସ୍ଥାପନ କରିଥାଆନ୍ତି ଏବଂ ଶେଷରେ ତାହାର ଜୀବନ ଉପରେ ମଧ୍ୟ ଶାସନ କରିବାକୁ ପଛାନ୍ତି ନାହିଁ ...... ଯେପରି ମଦ୍ୟପର ମଦ ପିଇବାକୁ ଆବେଗ ସୃଷ୍ଟି ହୁଏ, ଲମ୍ପଟର ସ୍ତ୍ରୀମାନଙ୍କ ପ୍ରତି ଆବେଗ ଆଉ ଜୁଆଡ଼ିର ଜୁଆ ପାଇଁ ଆବେଗ ହୋଇଥାଏ ଇତ୍ୟାଦି ଇତ୍ୟାଦି ...... । ଯଦି କୌଣସି ବ୍ୟକ୍ତି ଅନ୍ୟ କାହାରି ପାଇଁ ଏକ ପ୍ରଚଣ୍ଡ ଏବଂ ଅସଂଯତ ପ୍ରେମ ଅନୁଭବ କରେ ତେବେ ତାହାକୁ ଆବେଗ କୁହାଯାଏ । ତାହାରି ବିଷୟରେ ଏଠାରେ ଆଲୋଚନା କରାଯାଇଛି । ଏହା ହେଉଛି ସେହି ପ୍ରକାର ଆବେଗପୂର୍ଣ୍ଣ ପ୍ରେମ ଯାହା ମନୁଷ୍ୟ ପରସ୍ପର ପାଇଁ ଅନୁଭବ କରିଥାଏ, ଏବଂ ଯାହା ଭଗବାନଙ୍କ ପ୍ରତି ପ୍ରେମରେ ପରିବର୍ତ୍ତିତ ହେବା ଉଚିତ ।

***

ଉତ୍ତର—ପ୍ରାଣ ଏବଂ ପ୍ରାଣର ଯେଉଁ ଭାଗ ଶରୀରର ସ୍ନାୟୁଗୁଡ଼ିକଦ୍ୱାରା ବ୍ୟକ୍ତ ହୋଇଥାଏ, ତାହାହିଁ ହେଉଛି ସମ୍ବେଦନର କ୍ଷେତ୍ର । ହୃଦୟର ବିଶେଷ ଲକ୍ଷଣ ହେଉଛି ଭାବ ଏବଂ ଭାବାବେଗ । ସବୁଠାରୁ ଉତ୍ତମ ହେଲା ଯେ ସମ୍ବେଦନଠାରୁ ପୃଥକ୍ ରହି ତାକୁ ନିଜର ପିନ୍ଧାଲୁଗା ଭଳି ବାହାରର ବସ୍ତୁ ବୋଲି ମନେକରିବା ।



ଉତ୍ତର—ସାହସୀ ହୁଅ ଏବଂ ନିଜ ସମ୍ବନ୍ଧରେ ଏତେ ବେଶୀ ଚିନ୍ତା କରନାହିଁ । ତୋ କ୍ଷୁଦ୍ର ଅହଂକାର ତୋର ସକଳ କାର୍ଯ୍ୟରେ କେନ୍ଦ୍ରୀୟ ବୃତ୍ତି ହୋଇଥିବାରୁ ତୁ ଦୁଃଖୀ ଏବଂ ଅସନ୍ତୁଷ୍ଟ ଅଛୁ । ନିଜେ ନିଜକୁ ଭୁଲିଯିବା ହେଉଛି ଏହିସବୁ ରୋଗର ମହାନ୍ ଔଷଧ ।

*
**

ଉତ୍ତର—ନିଜ ବିଷୟରେ ସର୍ବଦା ବ୍ୟସ୍ତ ନ ରହିବା ନିଶ୍ଚିତରୂପେ ଅଧିକ ଲାଭଦାୟକ ।

*
**

ଉତ୍ତର—ଅତ୍ୟଧିକ ନିନ୍ଦା ଅତ୍ୟଧିକ ପ୍ରଶଂସାଠାରୁ କୌଣସି ଗୁଣରେ ଭଲ ନୁହେଁ । ଯଥାର୍ଥ ନମ୍ରତା ହେଲା ନିଜ ବିଷୟରେ କିଛି

ବିଗ୍ଭର ନ କରି କେବଳ ଭଗବାନଙ୍କ ଉପରେ ପ୍ରକୃତ ମୂଲ୍ୟ ନିର୍ଦ୍ଧାରଣ କରିବା ଭାର ଛାଡ଼ିଦେବା ।

***

ପ୍ରଶ୍ନ—ବୋଧହୁଏ ମୋର ମିଥ୍ୟା ଅହଂକାର ଏହି ବିନମ୍ରତାଠାରୁ ଭଲ ଥିଲା । କାରଣ ଏହି ବିନମ୍ରତାହିଁ ମୋତେ ତଳକୁ ଠେଲି ଦେଉଛି ।

ଉତ୍ତର—ଯେପରି ଗୋଟିକଠାରୁ ଖୁବ୍ ସାବଧାନତାର ସହିତ ଦୂରେଇ ରହିବା ଉଚିତ ସେହିପରି ଅନ୍ୟଟିଠାରୁ ମଧ୍ୟ ରକ୍ଷା ପାଇବାକୁ ଚେଷ୍ଟା କରିବା ଉଚିତ ।

***

ପ୍ରଶ୍ନ—ମୋର ପରମ ପୂଜ୍ୟା ମା ! ଆତ୍ମ-ନିରୀକ୍ଷଣ ଦ୍ୱାରା ମୁଁ ବହୁତ କିଛି ଜାଣିପାରୁଛି । ପ୍ରଥମ ହେଲା ମୋ ଭିତରେ ଈର୍ଷ୍ୟା ଭରି ରହିଛି, ଯାହା ମୋତେ ଅନ୍ଧ କରିଦେଉଛି ଏବଂ ମୋ ଭିତରର ଦ୍ୱିତୀୟ ଜିନିଷଟିରେ ଅଭିମାନ ପୂରିରହିଛି ଏବଂ ମୁଁ ମୋର ଲକ୍ଷ୍ୟ ହାସଲ କରିସାରିଛି ବୋଲି ତାହା ମୋତେ ବରାବର ଧାରଣା ଦେଉଛି ।

ଉତ୍ତର—ତୁ ଯଥାର୍ଥରେ ତୋ ସମ୍ବନ୍ଧରେ ଠିକ୍ ବର୍ଣ୍ଣନା କରିଛୁ; କିନ୍ତୁ ତାହା ସେତେବେଳେହିଁ ଉପଯୋଗୀ ହେବ ଯେବେ ତୁ ଏପରି ସଂକଳ୍ପ କରିବୁ ଯେ ଆଉ ଏପରି କେବେ ବି ଘଟିବ ନାହିଁ

ଏବଂ ତୁ ନିଜର ସେହି ଦୁଇଟି ଶତ୍ରୁଙ୍କୁ (ଈର୍ଷ୍ୟା ଓ ମିଥ୍ୟା ଅଭିମାନ) ଜୟ କରିବାକୁ ଚେଷ୍ଟା କରିବୁ । ସାଧକ ଏହି ମାର୍ଗରେ ଯେତେ ଯେତେ ଆଗକୁ ଯାଏ ସେତିକି ଅଧିକ ବୁଝି ପାରେ ଯେ ଯେଉଁ କାମ ବାକି ଅଛି ତା ତୁଳନାରେ ସେ ଏପର୍ଯ୍ୟନ୍ତ କିଛି ବି କରିନାହିଁ ।

*
**

ଉତ୍ତର—ଯେତେବେଳେ ମନୁଷ୍ୟ ନିଜେ ନିଜକୁ ଗୋଟିଏ ଅନ୍ଧଭଳି ଅନୁଭବ କରେ, ସେତେବେଳେ ସେ ଆଲୋକ ପ୍ରାପ୍ତି ନିମିତ୍ତ ପ୍ରସ୍ତୁତ ହୋଇଉଠେ ।

*
**

ପ୍ରଶ୍ନ—ପୂର୍ବରୁ ମୁଁ ମନେକରୁଥିଲି, "ମୁଁ ଜଣେ ବଡ଼ ସାଧକ ।" କିନ୍ତୁ ବର୍ତ୍ତମାନ ଭାବୁଛି, "ମୁଁ କିଛି ବି ନୁହେଁ ।"

ଉତ୍ତର—ସବୁଠାରୁ ଉତ୍ତମ ହେଲା ନିଜକୁ କେବେହେଲେ ବଡ଼ କିମ୍ବା ଶ୍ରେଷ୍ଠ କିମ୍ବା ଖୁବ୍ ମହତ୍ତ୍ୱପୂର୍ଣ୍ଣ କିମ୍ବା ନଗଣ୍ୟ ବୋଲି ଭାବିବ ନାହିଁ । କାହିଁକି ନା ଆମେ ନିଜେ ନିଜେ କିଛି ବି ନୋହୁଁ । ଆମକୁ କେବଳ ସେହିପରି ହେବାକୁ ହେବ ଯେପରି ଆମକୁ ଭଗବାନ ଗଢ଼ିବାକୁ ଚାହାନ୍ତି ।

*
**

ପ୍ରଶ୍ନ—ଶୈଶବରୁ ମୋର ସମସ୍ତ ଶୁଭ ବଗ୍ନର ନିରର୍ଥକ ପ୍ରମାଣିତ ହୋଇଛି । ମୋର ସ୍ୱଭାବ ଆଜ ଠିକ୍ ସେହିପରି ଅଛି ଯେପରି ପିଲାବେଳେ ଥିଲା । ଆଉ ମୋର ତ ଏ ଆଶା ନାହିଁ ଯେ ତାହା ବଦଳିବ । ସୁତରାଂ ତାକୁ ପରିବର୍ତ୍ତନ କରିବା ପାଇଁ ଚେଷ୍ଟା କରିବାଦ୍ୱାରା କ'ଣ କିଛି ଲାଭ ହେବ ? ଏ ମୋର ନିଜର ସ୍ୱଭାବ, ଏ କଥାକୁ ଏକବାରେ ଉପେକ୍ଷା କରିବା ଉଚିତ । ନିମ୍ନ ଏବଂ ଅବଚେତନ ପ୍ରକୃତିକୁ ସୁଧାରିବା ପାଇଁ ସବୁଠାରୁ ଉତ୍ତମ ପନ୍ଥା ହେଲା ତାହା ସହିତ ନିଜକୁ ମିଶେଇ ନ ଦେବା ।

ଉତ୍ତର—ଏସବୁ କୌଣସିଥିରେ ହେଲେ ଯଥାର୍ଥ ମନୋଭାବ ନାହିଁ । ଯେତେଦିନ ପର୍ଯ୍ୟନ୍ତ ତୁ ରୂପାନ୍ତରିତ ହେବୁ କିମ୍ବା ରୂପାନ୍ତରିତ ହେବୁ ନାହିଁ ଏହି ସଂକଳ୍ପରେ ଟଳମଳ ହେଉ, ଏବଂ ଉନ୍ନତି ନିମିତ୍ତ ପ୍ରୟାସ କରୁ, ପୁଣି ଅବସନ୍ନତା ଯୋଗୁ ପ୍ରୟାସ ବିମୁଖ ହେଉ, ସେତେଦିନ ପର୍ଯ୍ୟନ୍ତ ଯଥାର୍ଥ ମନୋଭାବ ତୋ ମଧ୍ୟରେ ସ୍ଥାୟୀ ହେବନାହିଁ । ତୋର ସକଳ ପରୀକ୍ଷା-ନିରୀକ୍ଷା ଏହି ସିଦ୍ଧାନ୍ତରେ ପହଞ୍ଚାଇ ଦେବା ଉଚିତ ଯେ ତୁ ନିଜେ କିଛି ବି ନୋହୁ, ଏବଂ ତୁ କିଛି ବି କରିପାରିବୁ ନାହିଁ । ଏକମାତ୍ର ଭଗବାନହିଁ ଆମର ପ୍ରାଣର ପ୍ରାଣ, ଚେତନାର ଚେତନା, ଶକ୍ତି ଏବଂ ସାମର୍ଥ୍ୟ । କେବଳ ତାଙ୍କୁହିଁ ଆମ୍ଭେ ନିଜକୁ ନିଃଶେଷରେ ଦେଇଦେବା ଉଚିତ; ଏବଂ ସେହିଁ ତାଙ୍କର ଅନନ୍ତ ଜ୍ଞାନଦ୍ୱାରା ଆମ୍ଭଙ୍କୁ କ'ଣ ହେବାକୁ ଚାହାନ୍ତି ସେହିରୂପେ ଗଢ଼ି ତୋଳିବେ ।



( ୬ )

ପ୍ରଶ୍ନ—ମୋର ପରମ ପୂଜ୍ୟା ମା ! ମୁଁ 'ମାତୃବାଣୀ' ପୁସ୍ତକରେ ପଢ଼ିଛି "ଏକମାତ୍ର ଏକାଗ୍ରତାହିଁ ତୋତେ ସେହି ଲକ୍ଷ୍ୟ ଆଡ଼କୁ ନେଇଯିବ" । ତେବେ କ'ଣ ଆମର ଧ୍ୟାନର ସମୟ ବଢ଼ାଇ ଦେବା ଉଚିତ ?

ଉତ୍ତର—ଏକାଗ୍ରତାର ଅର୍ଥ ଧ୍ୟାନ କରିବା ନୁହେଁ, ବରଂ ଏକାଗ୍ରତା ଏପରି ଏକ ଅବସ୍ଥା ଯାହାକୁ ଆମେ ସର୍ବଦା ବଜାୟ ରଖିବା ଆବଶ୍ୟକ । ବାହାରର କାର୍ଯ୍ୟ ଯାହା ହେଉନା କାହିଁକି ମୋ ମତରେ ଏହାହିଁ ହେଉଛି ଏକାଗ୍ରତାର ଅର୍ଥ : ଆମର ପ୍ରତ୍ୟେକ ଶକ୍ତି, ସମସ୍ତ ସଙ୍କଳ୍ପ ଏବଂ ସମସ୍ତ ଅଭୀପ୍ସାକୁ କେବଳ ଭଗବତ୍ ଅଭିମୁଖୀ କରିବା ଏବଂ ଆମର ଚେତନାରେ ତାଙ୍କର ସର୍ବାଙ୍ଗୀନ ସିଦ୍ଧିକୁ ଲାଭ କରିବା ।

*
**

ଉତ୍ତର—ଗୋଟିଏ ଅନ୍ତର୍ମୁଖୀ ଓ ଏକାଗ୍ର ମନୋଭାବକୁ ନିରନ୍ତର ବଜାୟ ରଖିବା କେତେଘଣ୍ଟା ନିର୍ଦ୍ଦିଷ୍ଟ ଧ୍ୟାନଠାରୁ ଅଧିକ ମହତ୍ତ୍ୱପୂର୍ଣ୍ଣ ।

*
**

ପ୍ରଶ୍ନ—ଖୁବ୍ ଭଲ ହୁଅନ୍ତା ଯଦି ମୁଁ ମୋର ନିଜର ଚେୟାର ଉପରେ ବସି ଏହି କଥା ଭାବନ୍ତି ଯେ ଚନ୍ଦ୍ରକିରଣ ପାଣି ଉପରେ କିପରି ଖେଳୁଛି !

ଉତ୍ତର—ବରଂ ଅଧିକ ଭଲ ହୁଅନ୍ତା ଯଦି କୌଣସି ପ୍ରକାର ବିଚାର ଓ ଚିନ୍ତା କରିବା ଛାଡ଼ି ଦେଇ ଭଗବତ କୃପା ଉପରେ ଧ୍ୟାନ କରନ୍ତୁ ।

*
**

ଉତ୍ତର—ଯଦି ତୁ କର୍ମ ଯଜ୍ଞରୂପେ କରିପାରୁ, ଏବଂ ସେହି କର୍ମକୁ ଏକାନ୍ତ ନିଷ୍ଠା ସହ ଭଗବାନଙ୍କ ଚରଣରେ ଅର୍ପଣ କରୁ, ତେବେ ସେହି କର୍ମ ସେତିକି ଫଳପ୍ରଦ ହେବ ଯେତିକି ଧ୍ୟାନଦ୍ୱାରା ହୁଅନ୍ତା ।

*
**

ପ୍ରଶ୍ନ—ହୁଏତ ମୋର ବୁଝିବାରେ ଭୁଲ ହୋଇଛି ଯେ ଯଦି ମୁଁ ବହୁ କାର୍ଯ୍ୟରେ ସମ୍ପୃକ୍ତ ନ ରହି ଅଯଥା କାହା ସହିତ

ବେଶୀ ମିଳାମିଶା ନକରି ସେହି ସମୟରେ ମୋର ନିଜ ସତ୍ତାକୁ ବଳାନ କରିପାରନ୍ତି, ତେବେ ଖୁବ୍ ଶୀଘ୍ର ଆପଣଙ୍କ ପାଖରେ ପହଞ୍ଚି ପାରନ୍ତି ।

ଉତ୍ତର—ମୁଁ ନିଜେ ଅନୁଭବ କରିଛି ଯେ ମନୁଷ୍ୟ ନିଜ ହସ୍ତଦ୍ୱାରା ସ୍ଥୁଳ କାର୍ଯ୍ୟ କରୁଥିବା ସତ୍ତ୍ୱେ ପୂର୍ଣ୍ଣଭାବରେ ଏକାଗ୍ର ହୋଇପାରେ ଏବଂ ଭଗବାନଙ୍କ ସହିତ ସଂପୂର୍ଣ୍ଣରୂପେ ଏକତ୍ୱ ବଜାୟ ରଖି ପାରେ । ମାତ୍ର ବସ୍ତୁତଃ ଏଥିପାଇଁ କିଛି ଅଭ୍ୟାସର ଆବଶ୍ୟକ ଏବଂ ଏହି ସମ୍ବନ୍ଧରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଲା ସବୁପ୍ରକାର ବାଜେ ଗପକୁ ପ୍ରତ୍ୟାଖ୍ୟାନ କରିବା । ଯଥାର୍ଥରେ କହିବାକୁ ଗଲେ ଅଯଥା ଓ ବାଜେ କଥାବାର୍ତ୍ତା ଏପରି ନିରର୍ଥକ ବ୍ୟାପାର ଯେ ତାହା ଆମକୁ ଭଗବାନଙ୍କଠାରୁ ଦୂରେଇ ନିଏ ।

*
**

ଉତ୍ତର—ମନୁଷ୍ୟ ଯେଉଁ କାମ କରେ ତା ଉପରେ ନୁହେଁ, ବରଂ ସେହି କର୍ମ ପଛରେ ଥିବା ମନୋଭାବ ଉପରେ ସମସ୍ତ କିଛି ନିର୍ଭର କରେ ।

ଯଦି ପୂର୍ଣ୍ଣ ଐକାନ୍ତିକତା ସହିତ ଭଗବାନଙ୍କର ସଂକଳ୍ପ ଶକ୍ତିକୁ ଅଭିବ୍ୟକ୍ତ କରିବା ପାଇଁ ସାଧକ କାର୍ଯ୍ୟ କରେ, ତେବେ ଏମିତି କୌଣସି କର୍ମ ନାହିଁ ଯାହା ଅହଂଭାବଠାରୁ ପୂରାପୂରି ପୃଥକ୍ ନ ରହିପାରେ । ମାତ୍ର ଯେପର୍ଯ୍ୟନ୍ତ ଏହି ଅବସ୍ଥା ପ୍ରାପ୍ତ ନ ହୋଇଛି

ସେପର୍ଯ୍ୟନ୍ତ ଏପରି କିଛି କର୍ମ ଅଛି ଯାହା ଭଗବାନଙ୍କ ସହ ସମ୍ପର୍କ ସ୍ଥାପନାରେ ଅଧିକ ସହାୟକ ହୋଇଥାଏ ।

*
**

ଉତ୍ତର—ଯୋଗ-ଜୀବନ ମନୁଷ୍ୟର କର୍ମ ଉପରେ ନିର୍ଭର କରେ ନାହିଁ, ବରଂ ସେ କିପରି ମନୋଭାବ ସହ କର୍ମ କରୁଛି ତା ଉପରେ ନିର୍ଭର କରେ । ମୋର କହିବାର ଉଦ୍ଦେଶ୍ୟ ହେଉଛି କାର୍ଯ୍ୟର ମୂଲ୍ୟ ଏତେ ନୁହେଁ ଯେତିକି ମନୋଭାବର, ଅଥବା ସେହି ବୃତ୍ତିର ଯାହାଦ୍ୱାରା ମନୁଷ୍ୟ କାର୍ଯ୍ୟ କରିଥାଏ । ଲୋକେ ଯାହାକୁ ମହାନ୍ କାର୍ଯ୍ୟ କହିଥା'ନ୍ତି ସେସବୁକୁ ମିଥ୍ୟା ଗର୍ବ ଏବଂ ଅଭିମାନର ସହିତ କରିବା ଅପେକ୍ଷା ବାସନ ଧୋଇ ଖାଦ୍ୟ ପରିବେଷଣ କରି ନିଜେ ନିଜକୁ ସମ୍ପୂର୍ଣ୍ଣଭାବେ ଭଗବାନଙ୍କୁ ଦେଇ ପାରିଲେ ତୁ ଭଗବାନଙ୍କର ଅଧିକ ନିକଟରେ ପହଞ୍ଚିପାରିବୁ ।

*
**

ପ୍ରଶ୍ନ—ମୋର ସର୍ବପ୍ରଥମେ ଏ କଥା ଜାଣିବା ଦରକାର ଯେ ଏହି କର୍ମ ମୋତେ ଅଧିକ ଭାବରେ ଆପଣଙ୍କ ଆଡ଼କୁ ଆଣିବାରେ ଉପାୟ ହୋଇପାରିବ କି ?

ଉତ୍ତର—ବାସ୍ତବରେ ଏପରି କୌଣସି କର୍ମ ନାହିଁ ଯାହା ସ୍ୱୟଂ ତୋତେ ମୋ ପାଖକୁ ନେଇ ଆସିବ । କର୍ମର ପଶ୍ଚାତରେ ଥିବା ମନୋଭାବହିଁ ମହତ୍ତ୍ୱପୂର୍ଣ୍ଣ ।

*
**

ପ୍ରଶ୍ନ—ମା, ମୋ ଭିତରେ କେଉଁ ସତ୍ତାଟି ଆପଣଙ୍କ ନିମିତ୍ତ କାର୍ଯ୍ୟ କରିବାରେ ଆନନ୍ଦ ପାଏ ଏବଂ କିଏ ସେ ସତ୍ତାଟି ଯେ ଆପଣଙ୍କୁ ଭଲପାଏ ?

ଉତ୍ତର—ଏହା ତୋ ସତ୍ତାର ସେହି ଭାଗଟି ଯାହା ଚୈତ୍ୟପୁରୁଷ ଦ୍ୱାରା ପ୍ରଭାବିତ ଏବଂ ଭାଗବତ ପ୍ରେରଣାକୁ ଅନୁସରଣ କରିଥାଏ ।

*
**

ପ୍ରଶ୍ନ—ମୁଁ କ'ଣ ଯଥାଶକ୍ତି ଆପଣଙ୍କ ସେବା କରିପାରୁଛି ?

ଉତ୍ତର—ହଁ, ତୁ ଯଥାଶକ୍ତି ମୋର ସେବା କରୁଛୁ । ମାତ୍ର ତୋର ଆଗାମୀ କାଲର ଯଥାଶକ୍ତି ଆଜର ଯଥାଶକ୍ତିଠାରୁ ଅଧିକ ଉତ୍ତମ ହେବା ଆବଶ୍ୟକ ।

*
**

ଉତ୍ତର—ଆତ୍ମସଂଯମ ବିନା ଭୌତିକ ସ୍ତରରେ କିଛି ବି ସିଦ୍ଧ କରାଯାଇପାରିବ ନାହିଁ । ଯଦି ତୋର ହୃଦୟ ନିୟମିତ ଭାବେ ଏବଂ ନିରନ୍ତର ସ୍ପନ୍ଦନର କଠୋର ସଂଯମର ଅଧୀନ ହେବାକୁ ଅସ୍ୱୀକାର କରେ, ତେବେ ତୁ ଏ ପୃଥିବୀରେ ବଞ୍ଚି ରହି ପାରିବୁ ନାହିଁ ।

ଯେଉଁମାନେ-ମହାନ୍ ସିଦ୍ଧି ଲାଭ କରିଛନ୍ତି, ସେମାନେ ସର୍ବଦା ମହାନ୍ ସଂଯମୀ ପୁରୁଷ ଥିଲେ ।

*
**

ଉତ୍ତର—ଏପରି ନୁହେଁ ଯେ ଆଶ୍ରମରେ କାମ କରୁ ନ ଥିବା ଲୋକର ଅଭାବ ! ମାତ୍ର ଯେଉଁମାନେ କାମ ନ କରି ରହିଛନ୍ତି ସେମାନେ ନିଶ୍ଚିତରୂପେ ଏପରି ଲୋକ ଯେଉଁମାନେ କାମ କରିବାକୁ ପସନ୍ଦ କରନ୍ତି ନାହିଁ । ଆଜି ଏ ରୋଗ ନିମିତ୍ତ ଔଷଧ ନିର୍ଣ୍ଣୟ ଖୁବ୍ କଠିନ । କାରଣ ଏହି ରୋଗର ଅନ୍ୟ ନାମ ହେଉଛି ଆଲସ୍ୟ ।

*
**

ପ୍ରଶ୍ନ—ଏ ଶରୀର ସ୍ୱଭାବତଃ ତମୋଗ୍ରସ୍ତ । ମାତ୍ର ଆପଣଙ୍କ ନିମିତ୍ତ କାର୍ଯ୍ୟ କରିବାଦ୍ୱାରା ତାହା 'ତାମସିକ' ହୋଇ ରହିବ ନାହିଁ ।

ଉତ୍ତର—ହଁ, ଠିକ୍ ଏହାହିଁ ଯଥାର୍ଥ ।

*
**

ପ୍ରଶ୍ନ—ମୁଁ ବରାବର ଅଧିକରୁ ଅଧିକ ସାବଧାନ ହେବାକୁ ଚେଷ୍ଟା କରୁଛି । ମାତ୍ର ମୋଦ୍ୱାରା ସବୁକିଛି ଖରାପ ହେଉଛି । ମନ୍ଦ ଛଡ଼ା ଭଲ ହେଉ ନାହିଁ ।

ଉତ୍ତର—ହଁ, ପ୍ରାୟ ଏହିପରି ହୋଇଥାଏ; କିନ୍ତୁ ମନୁଷ୍ୟର ଅଧିକରୁ ଅଧିକ ଶାନ୍ତିର ଆବାହନ କରିବା ଉଚିତ, ତା ହେଲେ କୌଣସି ପ୍ରକାର ଅବ୍ୟବସ୍ଥିତ ଭାବନାର ଖରାପ ପ୍ରଭାବ ପଡ଼ି ପାରିବ ନାହିଁ ।

*
**

ପ୍ରଶ୍ନ—ମା, 'ଅ' ଗୋଟିଏ ଚୀନା ମାଟିର ପାତ୍ର ଭାଙ୍ଗି ଦେଇଛି ।

ଉତ୍ତର—କାଲି ତୁ ଆଶ୍ଚର୍ଯ୍ୟ ହେଉଥିଲୁ ଯେ ସେ ଏପର୍ଯ୍ୟନ୍ତ କୌଣସି ପାତ୍ର ଭାଙ୍ଗି ନାହିଁ; ବସ୍ତୁତଃ ଆଜି ସେ ସେହି ଜିନିଷଟି ଭାଙ୍ଗିଦେଲା । ସତ କଥା କହିବାକୁ ଗଲେ ଏହିପରି ମାନସିକ ଗଠନଗୁଡ଼ିକ କାମ କରିଥା'ନ୍ତି । ଏହି କାରଣରୁ ମନୁଷ୍ୟ ଯାହା ଫଳିଭୂତ ହେବାକୁ ଚାହେଁ, କେବଳ ସେହି ବିଷୟରେ କହିବା ଉଚିତ ।

*
**

ଉତ୍ତର—ଯଦି ତୁ କାହାର ହିତ ଚିନ୍ତା ନ କରି ପାରୁ, ତେବେ କିଛି ବି ଚିନ୍ତା କର ନାହିଁ ।



( ୭ )

ପ୍ରଶ୍ନ—ମୁଁ କି ଉପାୟରେ ଆପଣଙ୍କ ପାଦପଦ୍ମରେ ନିଜର ସମସ୍ତ ସତ୍ତାକୁ ଉତ୍ସର୍ଗ କରିବାରେ ସକ୍ଷମ ହେବି ତାହାହିଁ ଖୋଜିବାରେ ଲଗିଛି ।

ଉତ୍ତର—ତୋ ଭିତରେ ଥିବା ଅଭୀପ୍ସା ଏବଂ ଶୁଦ୍ଧତାର ଯେଉଁ ଅଗ୍ନିକୁ ମୁଁ ଜାଳି ରଖିଛି ତାହାକୁ ସର୍ବଦା ପ୍ରଜ୍ୱଳିତ କରି ରଖ ।

*
**

ପ୍ରଶ୍ନ—ବିନା ଅଧ୍ୟବସାୟରେ କୌଣସି କାର୍ଯ୍ୟ ସାଧିତ ହୋଇ ପାରେ ନାହିଁ ?

ଉତ୍ତର—ଯେହେତୁ କୌଣସି ବିଷୟ ଖୁବ୍ କଷ୍ଟସାଧ୍ୟ, ସେଥିପାଇଁ ତାକୁ ଛାଡ଼ିଦେବା ଠିକ୍ ନୁହେଁ, ବରଂ ତାହା ଯେତେ

ବ କଠିନ ହୋଇଥାଉ ନା କାହିଁକି, ସଫଳତା ଅର୍ଜ୍ଜନ ପାଇଁ ସେତିକି ସଂକଳ୍ପ ଥିବା ଉଚିତ ।

ସମସ୍ତ କାର୍ଯ୍ୟ ଅପେକ୍ଷା କଠିନ କାର୍ଯ୍ୟ ହେଲା ଭୌତିକ ଜଗତ ମଧ୍ୟରେ ଭାଗବତ ଚେତନାକୁ ସ୍ଥାପନ କରିବା, ତେବେ କ'ଣ କଠିନ କାର୍ଯ୍ୟ ବୋଲି ଏହାକୁ ଛାଡ଼ିଦେବାକୁ ହେବ ?

*
**

ଉତ୍ତର—ଆମର ରାସ୍ତା ଖୁବ୍ ଦୀର୍ଘ ଏବଂ ଧୀରସ୍ଥିର ଭାବରେ ଅଗ୍ର-ସର ହେବା ଅନିବାର୍ଯ୍ୟ; ରାସ୍ତାର ପ୍ରତି ପଦକ୍ଷେପରେ ଆମେ ଅଗ୍ରସର ହେଉଛୁ କି ନାହିଁ ଏକଥା ପଚାରିବା ଅନାବଶ୍ୟକ ।

*
**

ଉତ୍ତର—ଯଦି ତୁ ସତତ ପ୍ରୟାସ କରିଚାଲୁ ତେବେ ନିଶ୍ଚୟ ସଫଳତା ଅର୍ଜ୍ଜନ କରିବୁ । ମୋର ସହାୟତା ସମ୍ବନ୍ଧେ ନିଶ୍ଚିତ ରହ ଯେ ତାହା ସର୍ବଦା ତୋ ସାଥିରେ ଅଛି ଏବଂ ମନୁଷ୍ୟର ଆହ୍ୱାନ କେବେ ବି ବ୍ୟର୍ଥ ହୁଏ ନାହିଁ ।

*
**

ଉତ୍ତର—ଯଦି ତୁ ସଂକଳ୍ପବଦ୍ଧ ହେଉ ତେବେ ମୋର ଶକ୍ତି ତୋ ଉଦ୍ୟମରେ ନିଶ୍ଚୟ ସହାୟକ ହେବ ।

*
**

ଉତ୍ତର—ଅସ୍ଥିର ହେବା ଭୁଲ ହେବ । କୌଣସି କାମ ନଜର ମନମୁଖୀ ହୋଇପାରେ ନାହିଁ । ଆଉ କୌଣସି ବସ୍ତୁ ସେତେବେଳେ ସଫଳ ହୋଇଥାଏ ଯେତେବେଳେ ତାହା କୌଣସି ଆନ୍ତର ସତ୍ୟକୁ ବ୍ୟକ୍ତ କରେ ।

*
**

ଉତ୍ତର—ହଁ, ତୋର ମନ ବହୁପ୍ରକାର ବିଷୟଦ୍ୱାରା ଚଞ୍ଚଳ ହୋଇ ଉଠୁଛି । ତାହା ବହୁ ରଚନା ସୃଷ୍ଟି କରୁଛି (ତୋର ସମ୍ବନ୍ଧ ଚିନ୍ତା କରୁଛି ଯେ ଏହା ଏପରି ହେବା ଉଚିତ ଆଉ ତାହା ସେପରି ହେବା ଉଚିତ) ଏବଂ ଭଲ ମନ୍ଦ ବିଗ୍ଭର ନକରି ସେସବୁରେ ଏତେ ଆସକ୍ତ ହୋଇଯାଉଛି ଯେ ଯେବେ ତାହାର ପ୍ରତିବାଦ କରାଯାଏ ତେବେ ତାହାକୁ ବଡ଼ ଧକ୍କା ଲଗେ ଏବଂ ସେ ଦୁଃଖ ପାଏ । ବରଂ ଏହା ଧୀରସ୍ଥିର ଏବଂ ଶାନ୍ତ ରହିବାକୁ ଚେଷ୍ଟା କରିବା ଉଚିତ ।

*
**

ଉତ୍ତର—ଭଗବତ କୃପା ଉପରେ ବିଶ୍ୱାସ ରଖ ତେବେ ମୁକ୍ତିର ସମୟ ଶୀଘ୍ର ଆସିବ ।

*
**

ଉତ୍ତର—ଏହା ନିତାନ୍ତ ଭ୍ରମ ଧାରଣା ଯେ କୌଣସି ମନୁଷ୍ୟ କୌଣସି ମାନସିକ ରୋଗକୁ ଦୂର କରିପାରିବ ।

ଏକମାତ୍ର ଭଗବାନହିଁ ରୋଗ ଦୂର କରିପାରନ୍ତି । ଆମକୁ ଏକମାତ୍ର ତାଙ୍କରିଠାରୁ ସହାୟତା ଓ ଅବଲମ୍ବନ ଗ୍ରହିବା ଉଚିତ । ଏକମାତ୍ର ତାଙ୍କର ଚରଣରେ ଆମର ସମସ୍ତ ଆଶାଭରସା ଲାଗି-ରହିବା ଉଚିତ ।

ଆଶୀର୍ବାଦ ।

*
**

ଉତ୍ତର—ମୋର ସମସ୍ତ ଶକ୍ତି ତୋର ସହାୟତା ପାଇଁ ତୋ ସହିତ ରହିଛି । ଶାନ୍ତି ଓ ବିଶ୍ୱାସର ସହିତ ନିଜକୁ ଖୋଲି ଧର, ଭାଗବତ କୃପା ଉପରେ ଶ୍ରଦ୍ଧା ରଖ, ତେବେ ତୁ ତୋର ସମସ୍ତ ବାଧାବିପତ୍ତିକୁ ଅତିକ୍ରମ କରିପାରିବୁ ।

*
**

ଉତ୍ତର—ଚିନ୍ତିତ ହୁଅ ନାହିଁ । କେବଳ ନିଜର ଭିତରକୁ ଆହୁରି ସୁନ୍ଦର ଓ ପରିଷ୍କାର କରିବାର ସଂକଳ୍ପକୁ ସର୍ବଦା ବଜାୟ ରଖ ।

*
**

ଉତ୍ତର—ନିଜେ ଦୁର୍ବଳ ଏହି ଭାବନାକୁ କାହିଁକି ସ୍ୱୀକାର କରିବୁ ? ତାହାହିଁ ତ' ଖରାପ ।

*
**

ଉତ୍ତର—ହଁ, ଶାନ୍ତ ଚିତ୍ତ ଏବଂ ଧୈର୍ଯ୍ୟପୂର୍ଣ୍ଣ ବିଶ୍ୱାସରେ ବିଜୟର ନିଶ୍ଚିତତା ରହିଛି ।

*
* *

ପ୍ରଶ୍ନ—ମୋ ଭିତରେ ଈଶ୍ୱର ବିଶ୍ୱାସ କମ୍ ନାହିଁ । ମାତ୍ର ତାହା ହୁଏତ ମୋର ଅହଂକାର ଯାହା ନିରନ୍ତର ଏହା କହୁଛି ଯେ ଭଗବାନ ମୋଠାରୁ ଯାହାକିଛି ଚାହାନ୍ତି ତା ମୁଁ କରିପାରିବି ନାହିଁ ।

ଉତ୍ତର—ହଁ, ଆଉ ସେହି ଅହଂକାର ଯେତେବେଳେ ହାରିଯାଇ ନିଜର ଅଧିକାର ଛାଡ଼ିଦିଏ ସେତେବେଳେ ଭୟ ଦୂର ହୋଇ ଯାଏ ଏବଂ ସେହି ସ୍ଥାନରେ ଏହା ନିଶ୍ଚିତ ପ୍ରତିଷ୍ଠିତ ହୁଏ ଯେ ଅସମ୍ଭବ ବୋଲି କିଛିହିଁ ନାହିଁ ।

*
* *

ପ୍ରଶ୍ନ—"ତୁ ତୋର ସମସ୍ତ ବାଧାବିପତ୍ତିକୁ ଅତିକ୍ରମ କରିଛିବୁ" —ଏହି ଶବ୍ଦ ମୁଁ ବାରମ୍ବାର ପୁନରାବୃତ୍ତି କରିଚାଲିଛି । ମାତ୍ର ମୋର ସମଗ୍ର ସତ୍ତା ଏହା ସ୍ୱୀକାର କରୁନାହିଁ ।

ଉତ୍ତର—ଯଦି ତୁ ଦୃଢ଼ ନିଷ୍ଠାଳତାର ସହିତ ତାହାକୁ ନିରନ୍ତର କହି ଚାଲୁ ତେବେ ତୋର ବିଦ୍ରୋହୀ ଅଙ୍ଗ ଶେଷରେ ତାହାକୁ ସ୍ୱୀକାର କରିବେ ।

*
* *

ଉତ୍ତର—ହଁ, ତୋର୍ ଆଶା କରିବା ଉଚିତ ଏବଂ ଏହି ବିଶ୍ୱାସ ଓ ଆଶାଦ୍ୱାରାହିଁ ସୁଖମୟ ଭବିଷ୍ୟତ ନିର୍ମିତ ହୋଇଥାଏ ।

*
**

ପ୍ରଶ୍ନ—ମୁଁ ନିଜର ଅତୀତକୁ ପୂର୍ଣ୍ଣଭାବରେ ଭୁଲିଯାଇଛି ।

ଉତ୍ତର—ହଁ, ମନୁଷ୍ୟ ନିଜର ଅତୀତକୁ ଭୁଲିଯିବା ଉଚିତ ।

*
**

ଉତ୍ତର—ମାନବ ଏତେ ବେଶୀ ବ୍ୟଥିତ ହେଉଛୁ କାହିଁକି ? ଶାନ୍ତ ରହ, ମନେରଖ ଆମର ଜୀବନର ଅବସ୍ଥା ସାଧାରଣ ଜୀବନର ଅବସ୍ଥା ନୁହେଁ ଏବଂ ଭଗବତୀ ଶକ୍ତି ଉପରେ ବିଶ୍ୱାସ ଅଟଳ ରଖ ଯେ ଯେଉଁ ମାନବିକ ଯନ୍ତ୍ର ତାଙ୍କ ପ୍ରଭାବ ଆଡ଼କୁ ଖୋଲି ହୋଇ ରହିଛି ତାହାର ମାଧ୍ୟମରେ ସେ ସବୁକିଛିକୁ ବ୍ୟବସ୍ଥିତ ଏବଂ ସଂପନ୍ନ କରିବେ ।

*
**

ପ୍ରଶ୍ନ—ମାଗୋ ! ତୁମେ ମୋ ହୃଦୟରେ ରହ । ତୁମ ବିନା ମୁଁ ଦୁର୍ବଳ ହୋଇଯାଉଛି ଏବଂ ଭୟଭୀତ ମଧ୍ୟ ହେଉଛି ।

ଉତ୍ତର—ଭୟ କରିବା ଉଚିତ ନୁହେଁ; ବିଜୟ ସେହିମାନଙ୍କ ନିମିତ୍ତ ଯେଉଁମାନେ ସମ୍ପୂର୍ଣ୍ଣ ନିର୍ଭୟ । ମୁଁ ତୋ ସାଥିରେ ସର୍ବଦା ରହିଛି, ତୋତେ ପରିଚାଳିତ କରୁଛି, ରକ୍ଷା କରୁଛି ।

*
**

ଉତ୍ତର—ଭୟ କରିବା କେବେ ବି ଉଚିତ ନୁହେଁ; ଭୟ ମନ୍ଦ ପରାମର୍ଶଦାତା । ତାହା ଏକ ଚୁମ୍ବକଭଳି କାମ କରିଥାଏ ଏବଂ ଯାହାକୁ ଆମେ ଭୟ କରୁ ଠିକ୍ ତାହାକୁହିଁ ଆକର୍ଷିତ କରିଥାଏ । ବରଂ ଅଟଳ ବିଶ୍ୱାସ ରଖ, ଡେରି ହେଉ କିମ୍ବା ଶୀଘ୍ର ହେଉ ସବୁକିଛି ନିଶ୍ଚୟ ସାଧିତ ହେବ ।

*
**

ଉତ୍ତର—ନିରାଶ ହେବାଦ୍ୱାରା କିଛି ବି ଫଳ ହୁଏ ନାହିଁ । ବରଂ ଏହାଦ୍ୱାରା ମନୁଷ୍ୟ ଠିକ୍ ସେହି ବସ୍ତୁକୁ ନିଜ ଉପରକୁ ଟାଣି ଆଣିଥାଏ ଯାହାକୁ ସେ ଭୟ କରୁଥାଏ । ତାହା ପରିବର୍ତ୍ତେ ମନୁଷ୍ୟ ସବୁ ପ୍ରକାର ନୈରାଶ୍ୟଜନକ ଚିନ୍ତାକୁ ବର୍ଜ୍ଜନ କରିବା ଉଚିତ ଏବଂ ଯାହା ଘଟିବା ଉଚିତ ବୋଲି ସେ ଇଚ୍ଛେ, କେବଳ ତାହାରି ଉପରେ ଏକାଗ୍ର ହେବା ଉଚିତ ।



ପ୍ରଶ୍ନ—ପରମପୂଜ୍ୟା ମା ! ମୁଁ ଶ୍ରୀଅରବିନ୍ଦଙ୍କ ଗତ ଚିଠିଖଣ୍ଡିକ ପାଇ ବହୁତ କଷ୍ଟ ଭାବୁଛି । କୌଣସି ବିରୋଧୀ ଶକ୍ତି କ୍ରିୟା କରିବାର ସୁସ୍ପଷ୍ଟ ଚିହ୍ନ କ'ଣ ? ତାହା ଅନ୍ୟ ଭିତରେ ଓ ମୋ ଭିତରେ କିପରି କ୍ରିୟା କରେ ମୁଁ ତାହା ଜାଣିବାକୁ ଶିକ୍ଷା କରିବାକୁ ଚାହେ ।

ଉତ୍ତର—(ବିରୋଧୀ ଶକ୍ତି କ୍ରିୟା କରିବାର)

ପ୍ରଥମ ଚିହ୍ନ : ଶ୍ରୀଅରବିନ୍ଦ ଓ ମୋଠାରୁ ସାଧକ ବହୁ ଦୂରରେ ବୋଲି ଅନୁଭବ କରେ ।

ଦ୍ୱିତୀୟ ଚିହ୍ନ : ସାଧକ ବିଶ୍ୱାସ ହରାଇ ବସେ, ଅନ୍ୟକୁ ସମାଲୋଚନା କରିବାକୁ ଆରମ୍ଭ କରେ ଏବଂ ସର୍ବଦା ଅସନ୍ତୁଷ୍ଟ ରହେ ।

ତୃତୀୟ ଚିହ୍ନ : ସେ ବିଦ୍ରୋହ କରେ ଏବଂ ମିଥ୍ୟା ମଧ୍ୟରେ ବୁଡ଼ିଯାଏ ।

*
**

ଉତ୍ତର—ଦୁଃଖ କରନାହିଁ । ସେହି ଗୋଟିଏ ଯୁଦ୍ଧକୁ ବାରମ୍ବାର ଜୟ କରିବାକୁ ହୁଏ, ବିଶେଷ କରି ସେହି ଯୁଦ୍ଧ ଯେତେବେଳେ ପ୍ରତିକୂଳ ଶକ୍ତି ବିରୁଦ୍ଧରେ ଲଢ଼ାଯାଏ । ସେଥିପାଇଁ ତୋତେ ଧୈର୍ଯ୍ୟରୂପ ଶସ୍ତ୍ରଦ୍ୱାରା ସଜ୍ଜିତ ହେବାକୁ ହେବ ଏବଂ ଚରମ ବିଜୟରେ ବିଶ୍ୱାସ ରଖିବାକୁ ହେବ ।

***

ପ୍ରଶ୍ନ—ମୋର ପରମ ଆରାଧ୍ୟା ଶ୍ରୀମା ! କୌଣସି ପ୍ରତିକୂଳ ଶକ୍ତି କ'ଣ ମନୁଷ୍ୟକୁ ମାଧ୍ୟମ ନ କରି ପାର୍ଥିବ ବାତାବରଣରେ ବିରୁଦ୍ଧରେ ସଫଳତାସହ କାମ କରିବାରେ ସକ୍ଷମ ହୁଏ ?

ଉତ୍ତର—ଏହା ଅସମ୍ଭବ ନୁହେଁ, ମାତ୍ର ଏକ ମାନବୀୟ ଯନ୍ତ୍ର ପାଇଲେ ସେମାନଙ୍କ ପକ୍ଷେ ଏହା ଖୁବ୍ ସହଜ ହୋଇଥାଏ ।

***

ଉତ୍ତର—ବିଶ୍ୱାସ ରଖିବା ଏବଂ ଜୀବନ୍ତ ତଥା ଅଟଳ ଶ୍ରଦ୍ଧା ବଜାୟ ରଖିବା ଖୁବ୍ ଆବଶ୍ୟକ । କିନ୍ତୁ ବିରୋଧୀ ଶକ୍ତିଗୁଡ଼ିକ ସମ୍ବନ୍ଧରେ ସର୍ବଦା ସତର୍କ, ସଚେତନ ଓ ନିଷ୍ଠାବାନ୍ ରହିବା ଉଚିତ ।

***

ପ୍ରଶ୍ନ—ମା, ସ୍ତ୍ରୀଲୋକମାନଙ୍କ ପ୍ରତି ମୋର କପରି ମନୋଭାବ ରଖିବା ଉଚିତ ? ମୋ ଭିତରେ ଗୋଟାଏ ଭାଗ ଏପରି ଅଛି ଯାହା ମୋତେ "ଅ" ପାଖକୁ ଯିବାପାଇଁ ପ୍ରବର୍ତ୍ତାଉଛି । ଏହି ଅଙ୍ଗ-ଗତ ଭାଗଟି ଦୃଢ଼ତାପୂର୍ବକ ପରାମର୍ଶ ଦେଉଛି ଯେ କୌଣସି ଆକର୍ଷଣକୁ--ଶ୍ରେଷ୍ଠ ହେଉ ବା ବଡ଼ ହେଉ--ଜିତିବାର ଏହାହିଁ ହେଉଛି ସବୁଠାରୁ ଭଲ ଉପାୟ ।

ଉତ୍ତର—ଏହା ତ ପିଲାଳିଆ କଥା; ଏହା ହେଉଛି ବିରୋଧୀ ଶକ୍ତି-ଗୁଡ଼ିକର ସେହି ପୁରୁଣା ଜାଲ । ଯଦି ସେମାନେ ନିଜର ପରାମର୍ଶକୁ ଶୃଙ୍ଖଳିତ ସହିତ ବିକୃତ ନ କରି ତାହାକୁ ଯଥାର୍ଥ ଭାବେ, ସ୍ପଷ୍ଟରୂପେ ପ୍ରକାଶ କରିପାରନ୍ତି; ତେବେ ତାହା ବହୁ-ତାଂଶରେ ଏପରି ହେବ—"ମଦ୍ୟପାନ ଛାଡ଼ିବାକୁ ହେଲେ ମଦ୍ୟପାନ କରିଚାଲ କିମ୍ବା ହତ୍ୟା ନ କରିବାର ପଣ ରଖିବାକୁ ହେଲେ ହତ୍ୟା କରିଯାଅ······।"

***

ଉତ୍ତର—କେବେ ବି ଭୟ କରିବା ଉଚିତ ନୁହେଁ । ଯଦି ବିରୋଧୀ ଶକ୍ତିସମୂହ ତୋର ନିମ୍ନ ପ୍ରକୃତି ମଧ୍ୟରେ ବାସ କରିବାକୁ ଚେଷ୍ଟା କରନ୍ତି ତେବେ ଏକମାତ୍ର ପନ୍ଥା ହେଲା ମୋ ସାହାଯ୍ୟ ନିମିତ୍ତ ଆବାହନ କରିବା ଏବଂ ସେମାନଙ୍କୁ ତଡ଼ିଦେବା ।

***

ପ୍ରଶ୍ନ—ମା, କାଲି ରାତିରେ ମୁଁ ଏକ ଦୁଃସ୍ୱପ୍ନ ଦେଖି ଭୟଭୀତ ହୋଇଛି ।

ଉତ୍ତର—ତୁ କେବେ ମଧ୍ୟ ଭୟ କରିବା ଉଚିତ ନୁହେଁ । ନିଦ୍ରାବସ୍ଥାରେ ମଧ୍ୟ ତୁ ମୋତେ ସ୍ମରଣ ରଖିବାରେ ସମର୍ଥ ହେବା ଉଚିତ ଏବଂ ଯଦି କୌଣସି ବିପଦ ଆସିଯାଏ ତେବେ ସାହାଯ୍ୟ ପାଇଁ ମୋତେ ଡାକିବା ଉଚିତ । ତାହେଲେ ତୁ ଦେଖିବୁ ସେହିସବୁ ଦୁଃସ୍ୱପ୍ନ ଦୂର ହୋଇଯିବ ।

***

ପ୍ରଶ୍ନ—ମୋର ମନେହେଲା ଯେପରି କୌଣସି ବ୍ୟକ୍ତି ମୋ ରୁମ୍‌ରେ ଥିଲା ଏବଂ ସେ ମୋର ରକ୍ତପାନ କରିବାକୁ ଚାହିଁବାରୁ ମୁଁ ତା ଆଡ଼କୁ ମୋର ବାମ ହାତଟି ବଢ଼ାଇ ଦେବାକୁ ଚାହିଁଲି, ଯଦ୍ଦ୍ୱାରା ସେ ତା'ର ଇଚ୍ଛା ପୂରଣ କରିପାରେ ।

ଉତ୍ତର—ଯଦି ତୁ ବିରୋଧୀ ଶକ୍ତିଗୁଡ଼ିକୁ ପୋଷଣ କରିବାକୁ ଚାହୁଁ, ତେବେ ସେମାନେ ଅଧିକରୁ ଅଧିକ ଅତ୍ୟାଚାର କରିବେ ଏବଂ କେବେ ବି ସନ୍ତୁଷ୍ଟ ହେବେ ନାହିଁ ।

***

ପ୍ରଶ୍ନ—'କ' ମୋତେ କହିଲେ ଯେ ସେ ବହୁତବାର ବିରୋଧୀ ଶକ୍ତିଗୁଡ଼ିକର ଯନ୍ତ୍ର ହୋଇପଡ଼ନ୍ତି ।

ଉତ୍ତର—ଏସବୁରେ ଅଧିକ ଭାବରେ ତା'ର ନିଜର କଳ୍ପନା କାମ କରିଛି । ଯଦି ସେ ତଥାକଥିତ ସେହି ପ୍ରାଣିକ ସତ୍ତାଗୁଡ଼ିକ ବିଷୟରେ କମ୍ ଚିନ୍ତା କରନ୍ତା ତେବେ ସେହି ସତ୍ତା ମଧ୍ୟରୁ ଅଧିକାଂଶ ଗୋଟି ଗୋଟି ହୋଇ ବିଲୀନ ହୋଇଯା'ନ୍ତେ ।

*
**

ପ୍ରଶ୍ନ—ଯଦି ମୁଁ ସମସ୍ତ ପରିସ୍ଥିତିରେ ଶାନ୍ତି ବଜାୟ ରଖିପାରେ ତେବେ ମୁଁ ଏହି ବିଷୟରେ ନିଃସନ୍ଦେହ ହୋଇପାରିବି ଯେ ବିରୋଧୀ ଶକ୍ତି ମୋଠାରୁ ଦୂରରେ ଅଛନ୍ତି ।

ଉତ୍ତର—ହଁ, ଯେପରି ଏହି ଶାନ୍ତି ହୃଦୟର ଜଡ଼ତାର ଶାନ୍ତି ନ ହୋଇ ଏକ ସଚେତନ ଶକ୍ତିର ଶାନ୍ତି ହୁଏ ।

*
**

ପ୍ରଶ୍ନ—ମା, ମୁଁ ଏହା ଭଲ ଭାବରେ ବୁଝି ପାରୁନାହିଁ, "ହୃଦୟର ଜଡ଼ତାର ଶାନ୍ତି"ର ଅର୍ଥ କ'ଣ ?

ଉତ୍ତର—ମୋର କହିବାର ଉଦ୍ଦେଶ୍ୟ ହେଉଛି, ସେହି 'ଶାନ୍ତି'ର କଥା, ଯାହାକୁ ସେହି ଲୋକମାନେ ଅନୁଭବ କରିଥାନ୍ତି, ଯେଉଁମାନେ ନିହାତି ଶୁଷ୍କ ଓ ଜଡ଼ ତଥା ଦୁନିଆଁର ସମସ୍ତ ଦୁଃଖଦୁର୍ଦ୍ଦଶା ଏବଂ ଅନ୍ୟର କଷ୍ଟପ୍ରତି ଉଦାସୀନ । ଯେଉଁ-

ମାନେ ନିଜର ହୃଦୟକୁ ପଥର ତୁଲ୍ୟ କରିଥା'ନ୍ତି ଏବଂ ଯେଉଁମାନେ ଅନ୍ୟ କାହାରି ପ୍ରତି ଅନୁକମ୍ପା ପ୍ରକାଶ କରି-ବାରେ ଅସମର୍ଥ ।



## ( ୮ )

ପ୍ରଶ୍ନ—ଯଦି ମୁଁ ପୂର୍ଣ୍ଣରୂପେ ଏହି ବାହାର ଜଗତଠାରୁ ପୃଥକ୍ ହୋଇ ପାରନ୍ତି ଏବଂ ସମ୍ପୂର୍ଣ୍ଣଭାବେ ଏକୁଟିଆ ରହି ପାରନ୍ତି ତେବେ ଯେଉଁ ଅବସାଦକୁ ମୁଁ ମୋ ଭିତରୁ ତଡ଼ିବାରେ ଅସମର୍ଥ ହୋଇଛି ତାକୁ ଜୟ କରିବାରେ ସମର୍ଥ ହୋଇପାରନ୍ତି ।

ଉତ୍ତର—ଏହା ଏକେବାରେ ଠିକ୍ ନୁହେଁ । ଏକାନ୍ତବାସୀ ଏବଂ ସନ୍ନ୍ୟାସୀମାନଙ୍କର ଅନୁଭବ ଅକାଟ୍ୟ ଭାବେ ଏହାର ବିପରୀତ କଥା ପ୍ରମାଣ କରିଛି । ବାଧାବିପତ୍ତି ନିଜ ଭିତରୁ, ନିଜ ପ୍ରକୃତି ମଧ୍ୟରୁ ଆସିଥାଏ । ବ୍ୟକ୍ତି ଯେଉଁଠାକୁ ବି ଯାଏ, ବାହ୍ୟ ପରିସ୍ଥିତି ଯେପରି ହେଉନା କାହିଁକି ସବୁପ୍ରକାର ବାଧାବିପତ୍ତିକୁ ନିଜ ସାଥିରେ ନେଇକରି ଯାଇଥାଏ । ସେଥିରୁ ଉଦ୍ଧାର ହେବାର କେବଳ ଗୋଟିଏ ମାତ୍ର ବାଟ ଅଛି—ସମସ୍ତ ଅସୁବିଧା ଓ ବାଧାବିଘ୍ନଗୁଡ଼ିକୁ ଅତିକ୍ରମ କରିବା ଏବଂ ନିଜର ନିମ୍ନ ପ୍ରକୃତିକୁ ଜୟ କରିବା । ତେବେ

ଅନିଶ୍ଚିତ ପଦକ୍ଷେପକୁ ଠିକ୍ ଗ୍ରହଣ ନ କରି ଏବଂ ଅନ୍ଧାର ରାସ୍ତାରେ ପ୍ରକାଶର ସହାୟତା ବିନା ନିଜେ ନିଜେ ଏକାକୀ ନିଜ ବଳରେ କାର୍ଯ୍ୟ କରିବାଠାରୁ ଗୋଟାଏ ସୁସ୍ପଷ୍ଟ ଓ ଦୃଢ଼ ସହାୟତାସହ କାର୍ଯ୍ୟ କରିବା କ'ଣ ଭଲ ନୁହେଁ ?

***

ପ୍ରଶ୍ନ—ହେ ମୋର ସ୍ନେହମୟୀ ମା ! ମୁଁ ପବିତ୍ର ଜୀବନ ଯାପନ କରିବାକୁ ଚାହୁଁଛି ଏବଂ ଦିବ୍ୟ ଜୀବନ ଆଡ଼କୁ ଅଗ୍ରସର ହେବାପାଇଁ ମୁଁ ସବୁକିଛି କରିବି ।

ଉତ୍ତର—ଏହା ସେତେବେଶୀ ବାହାରର ଅବସ୍ଥା ଉପରେ ନିର୍ଭରେ କରେ ନାହିଁ ଯେତେଟା ଆନ୍ତର ଅବସ୍ଥା ଉପରେ ନିର୍ଭର କରେ ।

ପବିତ୍ର ସତ୍ତା ସର୍ବଦା ପବିତ୍ର ରହିଥାଏ । ସମସ୍ତ ପରିସ୍ଥିତିରେ ମଧ୍ୟ ତାହା ପବିତ୍ର ଥାଏ ।

***

ପ୍ରଶ୍ନ—କୌଣସି ବ୍ୟକ୍ତି ଅନ୍ୟମାନଙ୍କ ସହିତ ବାସ କଲେ, ସେମାନଙ୍କଦ୍ୱାରା ନିଶ୍ଚୟ ଅଳ୍ପବେଶୀ ଭାବରେ ପ୍ରଭାବିତ ହେବ—ଏହା ଆପଣ କ'ଣ ସ୍ୱୀକାର କରିବେ ନାହିଁ ?

ଉତ୍ତର—ନାଃ, ଏହା କେବେ ବି ଠିକ୍ ନୁହେଁ । ସାଧାରଣ ଜୀବନ ପକ୍ଷରେ ଏହା ସତ୍ୟ ହୋଇପାରେ, ମାତ୍ର ଏକ ଯୋଗୀ ନିମିତ୍ତ ନୁହେଁ ।

***

ପ୍ରଶ୍ନ—ପରମ ଆରାଧ୍ୟା ମା ! ଯଦି ମୋ ସହିତ ରହିବାରେ ଅନ୍ୟମାନଙ୍କର ମଙ୍ଗଳ ନ ହେଲା ତେବେ କ'ଣ ମୋର ସମସ୍ତଙ୍କଠାରୁ ପୃଥକ ରହିବା ଉଚିତ ନୁହେଁ ?

ଉତ୍ତର—ଏହାଠାରୁ ହୁଏତ ଅଧିକ ଭଲ ହେବ ଯଦି ତୁ ତୋର ସାଧାରଣ ଚେତନାର ନିମ୍ନ ସ୍ତରକୁ ଖସିଯିବାର ପ୍ରବୃତ୍ତିଠାରୁ ନିଜକୁ ଦୂରେଇ ରଖୁ ।

***

ପ୍ରଶ୍ନ—କୌଣସି ବସ୍ତୁ, ତା ଯାହା ହେଉନା କାହିଁକି, ତାର ଓ ମୋ ମଧ୍ୟରେ କୌଣସି ଭେଦ ନାହିଁ, କାରଣ ଭଗବାନ ଯେପରି ସେହି ବସ୍ତୁରେ ବିଦ୍ୟମାନ ସେହିପରି ମୋ ଭିତରେ ମଧ୍ୟ ବିଦ୍ୟମାନ—ଯଦି ଏହି ବିଚାର ଉପରେ ମୁଁ ଏକାଗ୍ର ହୁଏ, ତା'ର ପରିଣାମ କ'ଣ ହେବ ?

ଉତ୍ତର—ସମ୍ଭବତଃ ଏପରି ଭାବନା ଅତ୍ୟନ୍ତ ବିପଜ୍ଜନକ । ଏହାଦ୍ୱାରା ତୁ ନିଜକୁ ସକଳ ପ୍ରକାର ପ୍ରଭାବ ଆଡ଼କୁ ନିଃସ୍ପୃହଭାବେ ଖୋଲି ଧରୁ ଏବଂ ଏପରି ପ୍ରଭାବ ଆଦୌ ବାଞ୍ଛନୀୟ ନୁହେଁ ।

***

ପ୍ରଶ୍ନ—ଜଣେ ଯୋଗୀ ପୂର୍ଣ୍ଣ ସମତା ସହିତ ସବୁ ପ୍ରକାରର ଘୃଣ୍ୟ ବସ୍ତୁକୁ ସ୍ୱୀକାର କରିନେବା ଏବଂ ହଜମ କରିନେବା ଉଚିତ ।

ଉତ୍ତର—କାହିଁକି ? ଏପରି କରିବାର କୌଣସି ଆବଶ୍ୟକତା ମୁଁ ଦେଖୁ ନାହିଁ । ଘୃଣ୍ୟ ବସ୍ତୁର ପ୍ରଭାବରୁ ରକ୍ଷା ପାଇବା ପାଇଁ ଯେଉଁ ପ୍ରଚେଷ୍ଟା କରିବାକୁ ହୋଇଥାଏ, ତାହାକୁ ଅନ୍ୟ କୌଣସି ଫଳପ୍ରଦ କାର୍ଯ୍ୟରେ ଉପଯୋଗ କରାଯାଇପାରିବ ।

***

ପ୍ରଶ୍ନ—ହେ ପରମ ପ୍ରିୟ ମା ! ତୁ ମୋତେ ଅତ୍ୟନ୍ତ ସୁଖରେ ରଖିଛୁ ଏବଂ ମୁଁ ଏହା ଦେଖିବାକୁ ଚାହେ ଯେ ଏ ସାରା ସଂସାର ମୋର ଭଳି ସୁଖୀ ହେଉ ।

ଉତ୍ତର—ଏହା ଖୁବ୍ ଉଚ୍ଚକୋଟୀର ଭାବନା ବୋଲି ସ୍ପଷ୍ଟ ପ୍ରମାଣିତ ହେଉଛି, କିନ୍ତୁ ଏହି ଭାବନା ସହିତ ଜ୍ଞାନର କିଛି ଅଂଶ ମିଶିଥିବା ଉଚିତ । କାହିଁକି ନା ଅନ୍ୟ ଭିତରେ ଶାନ୍ତି ଏବଂ ଆନନ୍ଦ ସଞ୍ଚାରିତ କରିବା ଏତେ ସହଜ ନୁହେଁ । ଆଜି ଯେପର୍ଯ୍ୟନ୍ତ ମନୁଷ୍ୟ ସ୍ୱୟଂ ନିଜ ଭିତରେ ଏକ ଅଟଳ ଅଚଳ ଶାନ୍ତି ଏବଂ ପ୍ରସନ୍ନତା ଲାଭ ନ କରିଛି ସେପର୍ଯ୍ୟନ୍ତ ଏହି କଥାରେ ଖୁବ୍ ବିପଦ ରହିଛି । କାରଣ ସେ ନିଜେ ଯେଉଁ ବସ୍ତୁ ଲାଭ କରିଛି ତାହାକୁ ସେ ଅନ୍ୟ ପାଖରେ ପହଞ୍ଚାଇ ଦେବା ବଦଳରେ ହରାଇ ବସିବ ।

***

ପ୍ରଶ୍ନ—ମୋର ହୃଦୟ ଅନ୍ୟ ପାଇଁ କରୁଣାରେ ପୂର୍ଣ୍ଣ ଏବଂ ମୁଁ ସେମାନଙ୍କର କଷ୍ଟକୁ ଅନୁଭବ କରିବାରେ ଅସମର୍ଥ ନୁହେଁ, ମାତ୍ର ଏହି ଭାବନା ଦ୍ୱାରା କି ଲାଭ ହେବ ଯଦି ମୁଁ ଲୋକଙ୍କର ଦୁଃଖରେ ସହାୟକ ନ ହୋଇପାରେ ?

ଉତ୍ତର—ମନୁଷ୍ୟ କେବଳ ସେତେବେ ଯାଇ ଅନ୍ୟର ଶୋକତାପ ଓ ଦୁଃଖକଷ୍ଟ ଦୂର କରିବାରେ ସହାୟକ ହୋଇପାରେ ଯେବେ ସେ ନିଜେ ନିଜ ଭିତରେ ଥିବା ସେହି ଶୋକ ଓ ଦୁଃଖକୁ ଜୟ କରିବ ଏବଂ ନିଜର ଭାବାବେଗ ଆଉ ନିଜର ପ୍ରତିକ୍ରିୟା ଉପରେ ପ୍ରଭୁତ୍ୱ ଲାଭ କରିବ ।

*
**

ଉତ୍ତର—ତୁ ତୋ ହୃଦୟକୁ ଶୁଦ୍ଧ କରିବା ନିମିତ୍ତ କାର୍ଯ୍ୟ କରିବା ଉଚିତ । ଅନ୍ୟମାନେ କ'ଣ କରୁଛନ୍ତି ଆଉ କ'ଣ କରୁ-ନାହାନ୍ତି, ଏ ବିଷୟରେ ବିଚାର କରି ସମୟ ନଷ୍ଟ କରିବା ଅନାବଶ୍ୟକ ।

*
**

ଉତ୍ତର—ହଁ, ଉପରଠାଉରିଆ ତଥା ଭିତ୍ତିହୀନ ବିଚାର ଉପରେ ବିଶ୍ୱାସ କରିବା ଉଚିତ ନୁହେଁ ।

*
**

ଉତ୍ତର—ଯେତେବେଳେ ମନୁଷ୍ୟ ଯଥାର୍ଥରେ ନିର୍ଦ୍ଦୋଷ, ଠିକ୍ ସେତେବେଳେ ସେ କାହାରି ଖରାପ ବ୍ୟବହାର ପ୍ରତି ସବୁଠାରୁ ଅଧିକ ଉଦାସୀନ ହେବା ଉଚିତ; କାରଣ ସେତେବେଳେ ନିଜେ ନିଜକୁ ଦୋଷୀ କରିବାର କୌଣସି କାରଣ ନ ଥାଏ, ଏବଂ ନିଜକୁ ସାନ୍ତ୍ୱନା ଦେବା ନିମିତ୍ତ ନିଜ ବିବେକର ଅନୁମୋଦନ ଥାଏ ।

*
**

ଉତ୍ତର—ତୁ ଯଦି ଅନ୍ୟମାନଙ୍କ କହିବା ଉପରେ ଧ୍ୟାନ ନ ଦେଉ ତେବେ ଖୁବ୍ ଭଲ ହେବ ।

*
**

ଉତ୍ତର—ନିଶ୍ଚୟ, ଯେଉଁମାନଙ୍କର ସାହସ ଅଛି, ସେମାନେ ସାହସହୀନ ବ୍ୟକ୍ତିଙ୍କୁ ସାହସ ଦେବା ଉଚିତ ।

*
**

ପ୍ରଶ୍ନ— ମୁଁ ପ୍ରାୟ ରାଗିଯିବା ଅବସ୍ଥାରେ ଥିଲି, କିନ୍ତୁ ଖୁବ୍ ଚେଷ୍ଟା-ଦ୍ୱାରା ନିଜେ ନିଜକୁ ଆୟତ୍ତାଧୀନ କରିପାରିଛି ।

ଉତ୍ତର—ନିଜର କ୍ରୋଧକୁ ଆୟତ୍ତାଧୀନ କରିବା ବହୁତ ଲାଭଦାୟକ ଏବଂ କିଛି ନ ହେଲେ ମଧ୍ୟ ଏହା ଶିଖିବା ପାଇଁ ଅନ୍ୟମାନଙ୍କ ସହିତ ସମ୍ପର୍କ ସ୍ଥାପନରେ ଉପଯୋଗୀ ହୋଇଥାଏ ।

*
**

ଉତ୍ତର—ମୁଁ ଏହିସବୁ ଝଗଡ଼ା ଅପେକ୍ଷା ଅଧିକ ମୂର୍ଖତାପୂର୍ଣ୍ଣ ଅନ୍ୟ କୌଣସି ବିଷୟ ଜାଣି ନାହିଁ । ଏଥିରେ ପ୍ରତ୍ୟେକେ ଭୁଲ କରଥା'ନ୍ତି ଏବଂ ଏହିପରି ଦୁଃଖଦାୟକ ମିଥ୍ୟାଭିମାନଠାରୁ ଅଧିକ ହାସ୍ୟାସ୍ପଦ ହୋଇ କିଛି ନାହିଁ ।

*
**

ଉତ୍ତର—ମୌନ ହେବାଦ୍ୱାରା କୌଣସି ଭୁଲ ହେବାର ଆଶଙ୍କା ରହେ ନାହିଁ । କିନ୍ତୁ ଗୁଡ଼ାଏ କଥା କହିବା ସମୟରେ ଦଶ-ଥରରୁ ନଅଥର ମୂର୍ଖତାପୂର୍ଣ୍ଣ କଥା କହିବା ସମ୍ଭବ ହୋଇଥାଏ ।

*
**

ଉତ୍ତର—ମିଥ୍ୟା କହିବା ଆଦୌ ଉଚିତ ନୁହେଁ । ଏଠାରେ (ଆଶ୍ରମରେ) ତାହାର ପରିଣାମ ଅତ୍ୟନ୍ତ କ୍ଷତିକାରକ ହୋଇଥାଏ, କାରଣ ମିଥ୍ୟା ହେଉଛି ସେହି ବସ୍ତୁର ପ୍ରତୀକ ଯାହା ଦିବ୍ୟ-ସତ୍ୟର କ୍ରିୟାକୁ ବିରୋଧ କରିଥାଏ ।



ଉତ୍ତର—ସ୍ୱାସ୍ଥ୍ୟ ହେଉଛି ଏକ ଗଭୀର ଆନ୍ତର ସାମଞ୍ଜସ୍ୟର ବାହ୍ୟ ଅଭିବ୍ୟକ୍ତି । ତାହା ଯୋଗୁ ଗର୍ବ ଅନୁଭବ କରିବା ଉଚିତ୍, ତାହାକୁ ଘୃଣା କରିବା ଅନୁଚିତ ।

*
**

ଉତ୍ତର—ତୁ ସର୍ବଦା ଏପରି କଳ୍ପନା କାହିଁକି କରୁଛୁ ? "ମୁଁ ଅସୁସ୍ଥ ଅଛି କିମ୍ବା ଅସୁସ୍ଥ ହେବାକୁ ଯାଉଛି !" ତୁ କାହିଁକି ଏହି ଭାବନାରେ ନିଜକୁ ଗୋଟାଏ ବିକୃତ ପ୍ରେରଣା ଆଡ଼କୁ ଖୋଲି ଦେଉଛୁ ? ଅସୁସ୍ଥ ହେବାର କୌଣସି କାରଣ ନାହିଁ ଏବଂ ତୁ ଅସୁସ୍ଥ ବୋଲି ମୁଁ ମୋଟେ ଭାବୁ ନାହିଁ ।

*
**

ପ୍ରଶ୍ନ—ପୂଜ୍ୟା ମା ! ମୋତେ ସର୍ଦ୍ଦି ହୋଇଛି । ତେବେ କ'ଣ ଅନ୍ୟ ଦିନଭଳି ମୋର ସ୍ନାନ କରିବା ଉଚିତ ହେବ ?

ଉତ୍ତର— ତୋର ଇଚ୍ଛା ଯେପରି ହେଉଛି, ସେପରି କର । ତାହାର ବିଶେଷ କିଛି ମହତ୍ତ୍ୱ ନାହିଁ, ମାତ୍ର ମହତ୍ତ୍ୱପୂର୍ଣ୍ଣ କଥା ହେଲା ତୁ ଭୟ ତ୍ୟାଗ କର । ଭୟଦ୍ୱାରା ମନୁଷ୍ୟ ବେମାର ହୋଇଥାଏ ଏବଂ ସେହି ଭୟ ଯୋଗୁଁହିଁ ମନୁଷ୍ୟ ରୋଗମୁକ୍ତ ହୋଇପାରେ ନାହିଁ । ସବୁ ପ୍ରକାରର ଭୟକୁ ଜୟ କରିବାକୁ ହେବ ଏବଂ ତା ପରିବର୍ତ୍ତେ ସେହି ସ୍ଥାନରେ ଭଗବତ କୃପା ଉପରେ ପୂର୍ଣ୍ଣ ଭରସା ରଖିବାକୁ ହେବ ।

***

ପ୍ରଶ୍ନ— କିଛିଦିନ ହେଲା ମୋର କାନ୍ଧର ପଛ ପାଖରେ ଯନ୍ତ୍ରଣା ହେଉଛି । ମୁଁ ଆମ ଔଷଧାଳୟର ଚିକିତ୍ସାଦ୍ୱାରା ଅତିଷ୍ଠ ହୋଇ ଉଠିଲିଣି । ଏବେ ଏହି ରୋଗରୁ ମୁକ୍ତ ହେବାପାଇଁ ଏକମାତ୍ର ଆପଣଙ୍କ ସଂକଳ୍ପ ଶକ୍ତି ଉପରେ ନିର୍ଭର କରୁଛି ।

ଉତ୍ତର— ବିନା ଔଷଧରେ ଯଦି ରହିବାକୁ ଚାହୁଁ ତେବେ ଗୋଟାଏ ଦୃଢ଼ ଏବଂ ଅଟଳ ବିଶ୍ୱାସ ଥିବା ଆବଶ୍ୟକ ।

***

ଉତ୍ତର— ଆଶା ଏବଂ ବିଶ୍ୱାସ ହରାଇବା କେବେ ବି ଉଚିତ ନୁହେଁ । ଏପରି କୌଣସି ରୋଗ ନାହିଁ ଯାହା ଅସାଧ୍ୟ, ଆଉ ଭଗବତ୍ କୃପାର କୌଣସି ସୀମା ନିର୍ଦ୍ଧାରଣ କରାଯାଇ ନ ପାରେ ।

***

ଉତ୍ତର—ସାଧକ ନିଜ ଅନ୍ତରର ଶାନ୍ତି ପ୍ରାପ୍ତ କରିବା ଉଚିତ ଏବଂ ନିରନ୍ତର ଅଭ୍ୟାସ କରି ତାହା ସ୍ଥାୟୀ ରଖିବାକୁ ଚେଷ୍ଟା କରିବା ଉଚିତ । ଯେଉଁ ଶକ୍ତି ଏହି ଶାନ୍ତି ଦେଇଥାଏ ତା ପାଖରେ ଏହିସବୁ ଶ୍ରେଷ୍ଠ ଶ୍ରେଷ୍ଠ ଯନ୍ତ୍ରଣା ଉଭେଇଯାଏ ।

*
**

ପ୍ରଶ୍ନ—ମା ! ଭୌତିକ ଶରୀରର ସ୍ୱାଭାବିକ ପ୍ରବୃତ୍ତି ହେଲା ବିନଷ୍ଟ ହୋଇଯିବା ଏବଂ ମନ ତାକୁ ଏଥିରେ ସାହାଯ୍ୟ କରେ । ସୁତରାଂ ଭୌତିକ ଶରୀରର ବିନାଶ ଆଡ଼କୁ ଆଗେଇ ଯିବା ପାଇଁ ଯେଉଁ ସ୍ୱାଭାବିକ ଆକର୍ଷଣ ରହିଛି, ଆପଣ ତାକୁ କିପରି ଭାବରେ ଅଟକାଇ ରଖିବେ ?

ଉତ୍ତର—ଶରୀର ଯେଉଁ ତତ୍ତ୍ୱଦ୍ୱାରା ଗଠିତ ହୋଇଛି ତାହାର ଅମରତ୍ୱ ସମ୍ବନ୍ଧରେ ତାହାକୁ ସଚେତନ ହେବାକୁ ପଡ଼ିବ (ଏହି ତଥ୍ୟକୁ ବୈଜ୍ଞାନିକଗଣ ମଧ୍ୟ ସ୍ୱୀକାର କରିଛନ୍ତି) । ତାପରେ ତାହାକୁ ଚୈତ୍ୟପୁରୁଷଙ୍କ ପ୍ରଭାବ ଏବଂ ତାଙ୍କ ଇଚ୍ଛାଶକ୍ତି ନିକଟରେ ସମର୍ପଣ କରିବାକୁ ହେବ ଏବଂ ଏହି ଚୈତ୍ୟପୁରୁଷହିଁ ସ୍ୱଭାବତଃ ଅମର ।

*
**

ପ୍ରଶ୍ନ—ପୂଜ୍ୟା ମା ! ଆପଣ କ'ଣ ମାନୁଛନ୍ତି ଯେ ଖାଇବାପିଇବା ଛାଡ଼ି ଦେବା ସମ୍ଭବ ?

ଉତ୍ତର—ଖାଇବା ପିଇବାର ଆବଶ୍ୟକତା ଯଦି ନ ରହେ ତେବେ ତା ପାଇଁ ଶରୀରର ସମ୍ପୂର୍ଣ୍ଣ ରୂପାନ୍ତର ଆବଶ୍ୟକ ଏବଂ ବର୍ତ୍ତମାନ ତାହା ଯେଉଁ ନିୟମ ଅନୁସାରେ ଚାଲୁଛି ସେସବୁର ଅଧୀନରେ ନ ରହିବା ଉଚିତ ।

*
**

ଉତ୍ତର—ଭୋକ ଲାଗିଲେ ଲୋକମାନେ ନିଜକୁ ଦୋଷୀ ବୋଲି କାହିଁକି ଭାବନ୍ତି—ମୁଁ ବୁଝିପାରୁ ନାହିଁ । ଯଦି ଖାଦ୍ୟ ପ୍ରସ୍ତୁତ ହୋଇ ରହିଛି, ତେବେ ତ' ତାହା ଭୋଜନ ନିମିତ୍ତ ।

*
**

ପ୍ରଶ୍ନ—ମୋର ପରମ ପ୍ରିୟ ଜନନି ! ମୁଁ ଭାବୁଛି ଏହିସବୁ ଭୋଜ ଉତ୍ସବଠାରୁ ଦୂରରେ ରହିବା ଅଧିକ ଲାଭଦାୟକ ।

ଉତ୍ତର—ଏହା ତ ସ୍ପଷ୍ଟ କଥା ଯେ ତାହା ଏପରି ଏକ ବାତାବରଣ ସୃଷ୍ଟି କରେ ଯେଉଁଠାରେ କେବଳ ଭୋଜନଟାକୁ ପ୍ରଧାନ ବୋଲି ଧରାଯାଇଥାଏ । ଏହା ଆଧ୍ୟାତ୍ମିକ ଜୀବନ ନିମିତ୍ତ ବିଶେଷ ଅନୁକୂଳ ନୁହେଁ ।



ଉତ୍ତର—ପ୍ରାଣସତ୍ତା ହେଉଛି ଏକ ସଙ୍ଗେ ସକଳ କାମନା, କ୍ରିୟାଶକ୍ତି, ଆବେଗ, ଲାଳସା ତଥା ଖିନ୍ନତାର ନିବାସସ୍ଥଳ; ଏବଂ ସାରଭୂତର କ୍ଷେତ୍ର ମଧ୍ୟ । ସେହିସବୁ ଉପରେ ଲଗାମ ଲଗାଇବାର ଉଦ୍ଦେଶ୍ୟ ହେଉଛି ସେଗୁଡ଼ିକୁ ଭଗବତ୍ ଇଚ୍ଛାଶକ୍ତି ଆଡ଼କୁ ଘୁରେଇ ଦେବା ଏବଂ ସେହି ଇଚ୍ଛାଶକ୍ତିର ଅଧୀନ କରିବା ।

*****

ପ୍ରଶ୍ନ—ପ୍ରାଣସତ୍ତା କେବଳ କ୍ଷମତା, ଧନସମ୍ପତ୍ତି ଏବଂ ପାର୍ଥିବ ଶକ୍ତିର ଅନ୍ବେଷଣ କରିଥାଏ ।

ଉତ୍ତର—ଏ ଧାରଣା ମଧ୍ୟ ଭୁଲ । ପ୍ରାଣସତ୍ତାର ଉଚ୍ଚତର ଭାଗଟି ମାନସିକ ସତ୍ତାର ଉଚ୍ଚତର ଭାଗଭଳି ଭଗବାନଙ୍କ ପାଇଁ ଅଭୀପ୍ସା କରେ ଏବଂ ତାଙ୍କର ବିଚ୍ଛେଦରେ ଦୁଃଖ ଅନୁଭବ କରେ ।

*****

ପ୍ରଶ୍ନ—ବୁଦ୍ଧିଗତ ବାତାବରଣରେ ରହିବାର ଇଚ୍ଛା କ'ଣ ଏହା ସୂଚନା କରୁନାହିଁ ଯେ ମୋର ମନ ମୋ ପ୍ରାଣ ଉପରେ ଆଧିପତ୍ୟ ବିସ୍ତାର କରିପାରେ ?

ଉତ୍ତର—ନା, ତାହା କେବଳ ଏହାହିଁ ସୂଚନା କରୁଛି ଯେ ତୋ ଚେତନାରେ ପ୍ରାଣ ଅପେକ୍ଷା ମନ ଅଧିକ ସ୍ଥାନ ଅଧିକାର କରିଛି । ମୁଁ ଯାହାକୁ ପ୍ରାଣ ଉପରେ ମନର ଆଧିପତ୍ୟ ବୋଲି କହୁଛି ତାହା ହେଲି ସେହି ଅବସ୍ଥା ଯେଉଁଥିରେ ପ୍ରାଣ କୌଣସି ବିଷୟ ଆରମ୍ଭ କରେ ନାହିଁ, ଏପରି କୌଣସି ଆବେଗକୁ ସ୍ୱୀକାର କରେ ନାହିଁ, ଯାହା ପ୍ରଥମେ ମନଦ୍ୱାରା ଅନୁମୋଦିତ ହୋଇ ନ ଥାଏ । ସେ ସମୟରେ ଏପରି କୌଣସି କାମନା, ଏପରି କୌଣସି ଲାଳସା ଦେଖାଦିଏ ନାହିଁ ଯାହା ମନର ପସନ୍ଦ ନୁହେଁ ଏବଂ ଯଦି କୌଣସି କାମନା, ଲାଳସା, ହିଂସା ବା ଆବେଗ ବାହାରୁ ଆସିଯାଏ ତେବେ ମନ ତହିଁରେ ହସ୍ତକ୍ଷେପ କରେ ଏବଂ ଶୀଘ୍ର ସେସବୁକୁ ଆୟତ୍ତ କରେ ।

⁂

ପ୍ରଶ୍ନ—ପରମ ପୂଜ୍ୟା ମା ! ଯେଉଁ ପରିମାଣରେ ମୋର ଶରୀର ଦୁର୍ବଳ ହୋଇଯାଉଥିବ ସେହି ପରିମାଣରେ ମୋର ପ୍ରାଣିକ କାମନାଗୁଡ଼ିକ ମଧ୍ୟ ବିଲୀନ ହୋଇଯିବେ, ଏହା କ'ଣ ଠିକ୍ ନୁହେଁ ?

ଉତ୍ତର—କେବେ ବି ନୁହେଁ, ଏହା ସମ୍ପୂର୍ଣ୍ଣ ଓଲଟା କଥା । ପ୍ରାଣର କାମନାଗୁଡ଼ିକୁ ଜୟ କରିବାକୁ ହେଲେ ଏକ ଅତି ଉତ୍ତମ ଶୁଦ୍ଧ ଶାରୀରିକ ସମତା ଏବଂ ସୁଦୃଢ଼ ସ୍ୱାସ୍ଥ୍ୟର ପ୍ରୟୋଜନ ।

*
**

ଉତ୍ତର—ପ୍ରାଣ ଜଗତରେ ଆକର୍ଷଣ ଓ ବିକର୍ଷଣ ଏକହି ବସ୍ତୁର ଠିକ୍ ଏବଂ ଭୁଲ ଦିଗ ଅଟନ୍ତି ଏବଂ ସର୍ବଦା ଆସକ୍ତିର ପରି-ପୂରକ । ଦୃଢ଼ ସଂକଳ୍ପ ସହିତ ନିଜ ବିଚାରକୁ ଏହିସବୁ-ଠାରୁ ଦୂରକୁ ଟାଣି ନେବା ଉଚିତ ।

*
**

ପ୍ରଶ୍ନ—ଯେଉଁ ପରିସ୍ଥିତି ଅବାଞ୍ଛନୀୟ ଆବେଗ ପାଇଁ ଅନୁକୂଳ ହୋଇଥାଏ, ତାହାଠାରୁ ସର୍ବଦା ନିଜକୁ ଦୂରେଇ ରଖିବା ଉଚିତ କିମ୍ବା ତାକୁ ସ୍ୱୀକାର କରି ନେଇ ନିଜର ଆୟତ୍ତାଧୀନ କରିବାକୁ ଚେଷ୍ଟା କରିବା ଉଚିତ ?

ଉତ୍ତର—ପ୍ରଲୋଭନଠାରୁ ଦୂରରେ ରହିବା ସର୍ବଦା ବାଞ୍ଛନୀୟ ।

*
**

ଉତ୍ତର—ପ୍ରଶାନ୍ତ ବିଶ୍ୱାସର ସହିତ ଚେଷ୍ଟା କରି ଚାଲ, ତେବେ ଦେଖିବୁ ପ୍ରାଣ ବିଦ୍ରୋହ କରିବା ବନ୍ଦ କରିଦେବ ।

*
**

ଉତ୍ତର—ଅବସାଦ ସର୍ବଦାହିଁ ଅସଙ୍ଗତ ଓ ଅଯୌକ୍ତିକ ଏବଂ ତଦ୍ଦ୍ୱାରା କୌଣସି ଲଭ ହୁଏ ନାହିଁ । ଏହା ହେଉଛି ଯୋଗ ସାଧନା ପଥରେ ସବୁଠାରୁ ମାରାତ୍ମକ ଶତ୍ରୁ ।



ପ୍ରଶ୍ନ—"ମାତୃବାଣୀ" ଗ୍ରନ୍ଥରେ ଆପଣ କହିଛନ୍ତି ଯେ ବୁଦ୍ଧି ଊର୍ଦ୍ଧ୍ୱର ଶୁଦ୍ଧଜ୍ଞାନ ଏବଂ ଏଠାରେ ନିମ୍ନ ଭୂମିରେ ତାହାର ସିଦ୍ଧି ନିମିତ୍ତ ଗୋଟିଏ ମଧ୍ୟସ୍ଥର କାର୍ଯ୍ୟ କରିଥାଏ । ଏହାର ଅର୍ଥ ବୌଦ୍ଧିକ ଅନୁଶୀଳନ ମନର ଊର୍ଦ୍ଧ୍ୱକୁ ଉଠିଯିବା ଏବଂ ସେଠାରେ ଶୁଦ୍ଧଜ୍ଞାନ ପ୍ରାପ୍ତ କରିବାରେ ବହୁତ ଆବଶ୍ୟକ, ଏହା କ'ଣ ଠିକ୍ ନୁହେଁ ?

ଉତ୍ତର—ବୌଦ୍ଧିକ ବିକାଶ ବିଶାଳ ନମନୀୟ ଏବଂ ସମୃଦ୍ଧ ମାନସିକ ଯନ୍ତ୍ର ଉତ୍ପନ୍ନ କରିବା ପାଇଁ ଅନିବାର୍ଯ୍ୟ ହୋଇଥାଏ । ମାତ୍ର ତାହାର କାର୍ଯ୍ୟ ସେଇଠାରେ ସମାପ୍ତ ହୋଇଯାଏ ।

ମନର ଊର୍ଦ୍ଧ୍ୱକୁ ଉଠିବାକୁ ହେଲେ ଏହା ସହାୟକ ହେବା ବଦଳରେ ଅଧିକାଂଶ ସମୟରେ ବାଧା ସୃଷ୍ଟି କରିଥାଏ । କାରଣ, ସାଧାରଣତଃ ସୁସଙ୍ଗତ ଏବଂ ସୁଶିକ୍ଷିତ ମନ ନିଜେ ନିଜ ଭିତରେ

ସନ୍ତୁଷ୍ଟ ରହିଥାଏ ଏବଂ କଦାଚିତ୍ ନିଜେ ନିଜକୁ ଅତିକ୍ରମ କରିବା ପାଇଁ ନୀରବ ରହିବାକୁ ଚେଷ୍ଟା କରିଥାଏ ।

***

ପ୍ରଶ୍ନ—ଏହା ଏକ କ୍ଷଣିକ ଆବେଗ ଯାହା ମୋତେ ଅଧ୍ୟୟନ କରିବା ପାଇଁ ଜୋର ଦେଉଛି ।

ଉତ୍ତର—ନିଜେ ନିଜକୁ ଗଢ଼ିବା ପାଇଁ, ନିଜର ମସ୍ତିଷ୍କକୁ ତିଆରି କରିବା ନିମିତ୍ତ ଯେଉଁ ପର୍ଯ୍ୟନ୍ତ ଆବଶ୍ୟକ ହେବ ସେପର୍ଯ୍ୟନ୍ତ ଅଧ୍ୟୟନ ପାଇଁ ତୋଠାରେ ଏହି ପ୍ରବଳ ପ୍ରବୃତ୍ତି ରହିବ । ମାତ୍ର ତୋର ମସ୍ତିଷ୍କ ଯେତେବେଳେ ସୁଗଠିତ ହୋଇଯିବ ସେତେବେଳେ ଅଧ୍ୟୟନର ରସ ଧୀରେ ଧୀରେ କମ୍ ହୋଇଯିବ ।

***

ପ୍ରଶ୍ନ—ମୋର ଆରାଧ୍ୟା ମା ! ମୁଁ ଦର୍ଶନଶାସ୍ତ୍ର ଏବଂ ନୀତିଶାସ୍ତ୍ରର ସୁବ୍ୟବସ୍ଥିତ ପାଠ୍ୟକ୍ରମର ଅନୁସରଣ କରିବାକୁ ଚାହୁଁଛି । "ଦିବ୍ୟ ଜୀବନ" (The Life Divine) ପଢ଼ିବାକୁ ମଧ୍ୟ ମୋର ଇଚ୍ଛା ଅଛି ।

ଉତ୍ତର—ଯଦି ତୁ ନୀତିଶାସ୍ତ୍ର ଓ ଦର୍ଶନଶାସ୍ତ୍ର ଅଧ୍ୟୟନ କରୁ ତେବେ ଏ କଥା ମନେରଖିବା ଉଚିତ ଯେ ତାହା ମସ୍ତିଷ୍କକୁ କସରତ୍ ଦେବା ଭଳି ଏକ ପ୍ରକାର ମାନସିକ ବ୍ୟାୟାମ । ଆଉ

ଏକଥା କେବେ ବି ଭୁଲିବୁ ନାହିଁ ଯେ ଏହିସବୁ ଅଧ୍ୟୟନ ଜ୍ଞାନର ଉତ୍ସ ନୁହେଁ କିମ୍ବା ଏହାଦ୍ୱାରା ମନୁଷ୍ୟ ଜ୍ଞାନଲାଭ କରେ ନାହିଁ । ସୁତରାଂ ଏହି କଥା "ଦିବ୍ୟ ଜୀବନ" ଗ୍ରନ୍ଥ ପ୍ରତି ପ୍ରଯୁଜ୍ୟ ନୁହେଁ ।

***

ଉତ୍ତର—ନୀରବତାରେହିଁ ଅନ୍ତଃପ୍ରେରଣାର ଉଚ୍ଚତମ ସ୍ରୋତ ବିଦ୍ୟମାନ ।

***

ପ୍ରଶ୍ନ—ଯଦି ଭଗବାନଙ୍କ ସହିତ ଏକ ହୋଇଯିବା ଆମର ଲକ୍ଷ୍ୟ ତେବେ ଏଣୁତେଣୁ କଥା ଜାଣିବା ପାଇଁ ମୁଁ କାହିଁକି ଯତ୍ନ କରିବି ?

ଉତ୍ତର—ବାସ୍ତବରେ କାର୍ଯ୍ୟର କୌଣସି ମହତ୍ତ୍ୱ ନାହିଁ, ମହତ୍ତ୍ୱପୂର୍ଣ୍ଣ ବସ୍ତୁ ହେଲା କେଉଁ ମନୋଭାବ ସହ କାର୍ଯ୍ୟ କରାଯାଉଛି । ମନକୁ ଏକବାରେ ନୀରବ ରଖିବା କଠିନ । ସୁତରାଂ ନିରର୍ଥକ ଭାବନା କିମ୍ବା ନିମ୍ନସ୍ତରୀୟ କଳ୍ପନାରେ ବୁଡ଼ିରହିବା ଅପେକ୍ଷା ମନକୁ ଅଧ୍ୟୟନରେ ଲଗାଇବା ଢେର ଭଲ ଉପାୟ ।

***

ପ୍ରଶ୍ନ—ମୁଁ ଦେଖିବାକୁ ଚାହେଁ ଯେ ବହିପତ୍ର ଏକଦମ୍ ପଢ଼ିବା ବନ୍ଦ କରିଦେବା ଦ୍ୱାରା କ'ଣ ହୋଇପାରେ ।

ଉତ୍ତର—ସର୍ବଦା ଗୋଟାଏ ବିଷୟରେ ମନକୁ ଏକାଗ୍ର ରଖିବା ବଡ଼ କଠିନ ଏବଂ ଯଦି କେହି ତାକୁ ଯଥେଷ୍ଟ କାମ ନ ଦିଏ ତେବେ ତାହା ଅସ୍ଥିର ହୋଇଉଠେ । ଏଥିପାଇଁ ମୁଁ ଭାବୁଛି ଯେ ପଢ଼ିବା ପୂରାପୂରି ବନ୍ଦ କରିଦେବା ପରିବର୍ତ୍ତେ ନିଜର ପାଠ୍ୟ ପୁସ୍ତକକୁ ସାବଧାନତା ସହ ବାଛିବା ଉଚିତ ।

***

ପ୍ରଶ୍ନ—ମୁଁ 'ମୋଟରଗାଡ଼ି' ସମ୍ବନ୍ଧରେ ଗୋଟିଏ ବହି ପଢ଼ୁଛି, ମାତ୍ର ତାହା ମୋଟାମୋଟି ଭାବରେ । ଏଥିରେ ଥିବା ଯନ୍ତ୍ରପାତି ସମ୍ବନ୍ଧୀୟ ଜଟିଳ ବ୍ୟାପାରକୁ ବାଦ ଦେଉଛି ।

ଉତ୍ତର—ଯଦି ତୁ ମୂଳରୁ ସାବଧାନତାସହ ଏବଂ ସବୁଗୁଡ଼ିକୁ ଗମ୍ଭୀରଭାବେ ଅଧ୍ୟୟନ କରିବାକୁ ନ ଚାହୁଁଛୁ ତେବେ ଆଦୌ ପଢ଼ିବା ଉଚିତ ନୁହେଁ । ଅତିସାମାନ୍ୟ ଉପରଠାଉରିଆ ଅପୂର୍ଣ୍ଣ ଜ୍ଞାନକୁ କୌଣସି କାର୍ଯ୍ୟରେ ଉପଯୋଗ କରାଯାଇ-ପାରେ—ଏହା ଭାବିବା ଗୋଟାଏ ମାରାତ୍ମକ ଭ୍ରମ । ବାସ୍ତବରେ ଏହା କୌଣସି କାର୍ଯ୍ୟରେ ଲାଗେ ନାହିଁ । ବରଂ ଏହା ମନୁଷ୍ୟକୁ କେବଳ ଆତ୍ମଗର୍ବୀ କରିଥାଏ । କାରଣ ମନୁଷ୍ୟ

ଭାବେ ଯେ ସେ ସବଜ୍ଞ, ଯଦ୍ୟପି ସେ ପ୍ରକୃତରେ କିଛି ହି ଜାଣେ ନାହିଁ ।

*
**

ଉତ୍ତର—ପିଲାଙ୍କ ନିମିତ୍ତ ଉପଯୋଗୀ ଏବଂ ଫଳପ୍ରଦ ଖେଳ ବାଛିବା ଖୁବ୍ କଷ୍ଟକର । ଏଥିପାଇଁ ବହୁତ ବିଚାର ଏବଂ ଧ୍ୟାନ ଦେବାକୁ ପଡ଼େ ଏବଂ ଯଦି ଆମେ ଏ କ୍ଷେତ୍ରରେ ଚିନ୍ତାଶୂନ୍ୟ ହୋଇ କାର୍ଯ୍ୟ କରୁ, ତେବେ ପରିଣାମ କ୍ଷତିକର ହୋଇଥାଏ ।

*
**

ପ୍ରଶ୍ନ—ମୁଁ "ମୋଲିୟର" (Moliére)ଙ୍କ ବହି ପଢ଼ୁଛି । ତାଙ୍କ ଲେଖା ଖୁବ୍ ଲଘୁ ବା ମାମୁଲି ଧରଣର ।

ଉତ୍ତର—"ମୋଲିୟର"ଙ୍କ ଲେଖାଗୁଡ଼ିକ ବାହାରକୁ ଲଘୁ ଜଣାଯାଉଥିଲେ ମଧ୍ୟ ତାହା ସାରଗର୍ଭକ । "ମୋଲିୟର"ଙ୍କ ମିଳନାନ୍ତକ ନାଟକଗୁଡ଼ିକରେ ଏକ ଗମ୍ଭୀର ଏବଂ ଜ୍ଞାନଯୁକ୍ତ ନିରୀକ୍ଷଣ ରହିଛି ।

*
**

ପ୍ରଶ୍ନ—ମୁଁ "ସାଲାମ୍ବୋ"* ସମାପ୍ତ କରିବାକୁ ଯାଉଛି । ମୋତେ ତା ମଧ୍ୟରେ କୌଣସି ଆଦର୍ଶ ଚରିତ୍ର ଦେଖିବାକୁ ମିଳିଲା ନାହିଁ ।

---

* ଗୁସ୍ତାଭ ଫ୍ଲୋବରଙ୍କ ଏକ ଉପନ୍ୟାସ ।

ଉତ୍ତର—ଏହା ଏକ ବର୍ଗର ସମ୍ବଳିତ ପୁସ୍ତକ ନୁହେଁ । କେବଳ ରଚନା ଶୈଳୀ ଏବଂ ସୌନ୍ଦର୍ଯ୍ୟ ଦୃଷ୍ଟିରୁ ଏହା ଖୁବ୍ ଉଚ୍ଚ କୋଟୀର ଲେଖା ।

⁂

ପ୍ରଶ୍ନ—ଯେତେବେଳେ ଆମେ କୌଣସି ଖରାପ ଲେଖା ଅଥବା ଅଶ୍ଳୀଳ ଉପନ୍ୟାସ ପଢ଼ୁ ସେତେବେଳେ କ'ଣ ଆମର ପ୍ରାଣ, ମନର ମାଧ୍ୟମରେ ସେସବୁକୁ ଉପଭୋଗ କରେ ନାହିଁ ?

ଉତ୍ତର—ମନ ମଧ୍ୟରେ ମଧ୍ୟ ନାନା ପ୍ରକାର କୁତ୍ସିତଭାବ ରହିଛି । ଗୋଟାଏ ନିତାନ୍ତ ନୀଚ, ଅସ୍ଥିର ଏବଂ ଅସଂସ୍କୃତ ପ୍ରାଣ ଏପରି ନିମ୍ନ ବସ୍ତୁଠାରୁ ରସ ଗ୍ରହଣ କରେ ।



( ୨୩ )

ପ୍ରଶ୍ନ—ମୋ ଶ୍ରେଣୀରେ ପିଲ୍ମାନେ ଏତେ ବେଶୀ କଥାବାର୍ତ୍ତା କରନ୍ତି ଯାହା ପାଇଁ ମୋତେ ପ୍ରାୟ ସେମାନଙ୍କ ଉପରେ ବିରକ୍ତ ହେବାକୁ ହୁଏ ।

ଉତ୍ତର—କଠୋରତାଦ୍ୱାରା ନୁହେଁ ବରଂ ଆତ୍ମସଂଯମଦ୍ୱାରା ପିଲ୍-ମାନଙ୍କୁ ନିଜର ଆୟୁତ୍ତାଧୀନ କରିବା ଉଚିତ ।

***

ଉତ୍ତର—ତୁ ଏହା ମନେ ରଖିବା ଆବଶ୍ୟକ ଯେ ଯଦି କୌଣସି ଶିକ୍ଷକ ଆଦର ସମ୍ମାନ ଚାହାନ୍ତି ତେବେ ତାଙ୍କୁ ଆଦରର ପାତ୍ର ହେବାକୁ ହେବ । କେବଳ 'ଅ' କହେ ନାହିଁ ଯେ ତୋର ଆଜ୍ଞା ପାଳିତ ହେବା ପାଇଁ ତୁ ଉଗ୍ରତାର ସହ କାମ ଆଦାୟ କରି-ଥାଉ—ଏହାଠାରୁ କମ୍ ଆଦରଣୀୟ ହୋଇ ଅନ୍ୟ କୌଣସି ବସ୍ତୁ ନାହିଁ । ସର୍ବପ୍ରଥମେ ତୁ ନିଜକୁ ନିଜର ଆୟୁତ୍ତାଧୀନ

କରିବା ଉଚିତ ଏବଂ ନିଜର ଇଚ୍ଛା ଲଦିଦେବା ପାଇଁ କେବେ ବି ପଶୁଶକ୍ତିର ବ୍ୟବହାର କରିବା ଉଚିତ ନୁହେଁ ।

*
* *

ଉତ୍ତର—ମୋର ଧାରଣା ଶିକ୍ଷକମାନଙ୍କ ଚରିତ୍ରରେ ଏପରି କିଛି ଥାଏ ଯାହା ଛାତ୍ରମାନଙ୍କର ଉଚ୍ଛୃଙ୍ଖଳତା ପାଇଁ ମୁଖ୍ୟତଃ ଦାୟୀ ।

*
* *

ପ୍ରଶ୍ନ—ମୋର ଆଶା ଆପଣ ମୋତେ ଏପରି ସୁସ୍ପଷ୍ଟ ନିର୍ଦ୍ଦେଶ ଦେବେ ଯଦ୍ଦ୍ୱାରା ମୁଁ ନିଜର ଶ୍ରେଣୀରେ ଶୃଙ୍ଖଳା ରଖି ପାରିବି ।

ଉତ୍ତର—ସବୁଠାରୁ ପ୍ରଧାନ କଥା ହେଲା ତୁ ନିଜକୁ ନିଜ କର୍ତ୍ତୃତ୍ୱରେ ରଖ, କେବେ ବି ନିଜର ମିଜାଜ୍ ଗରମ ହେବାକୁ ଦେ ନାହିଁ । ଯଦି ତୋର ନିଜ ଉପରେ କର୍ତ୍ତୃତ୍ୱ ନାହିଁ ତେବେ ଅନ୍ୟକୁ ଶାସନ କରିବାକୁ ଆଶା କିପରି କରୁଛୁ ? ଆଉ ମଧ୍ୟ ପିଲାମାନେ ଶୀଘ୍ର ତାହା ଠଉରେଇ ନିଅନ୍ତି ଯେ ଏହି ବ୍ୟକ୍ତିର ନିଜ ଉପରେ ଆୟତ୍ତ ନାହିଁ ।

*
* *

ପ୍ରଶ୍ନ—ପିଲାଙ୍କ ପାଖରେ ନିଜ ନିଜର ପାଠ୍ୟପୁସ୍ତକ ଥିବା ସତ୍ତ୍ୱେ ସେମାନେ ଅଧ୍ୟୟନ ପ୍ରତି ଅମନଯୋଗୀ ହେଉଛନ୍ତି ।

ଉତ୍ତର— ଛୋଟ ଛୋଟ ପିଲାଙ୍କୁ ପଢ଼ାଇବା ପାଇଁ ଯଥେଷ୍ଟ ଧୈର୍ଯ୍ୟ ଆବଶ୍ୟକ ଏବଂ ଗୋଟିଏ ବିଷୟକୁ ଭିନ୍ନ ଭିନ୍ନ ରୂପ ଦେଇ ବାରମ୍ବାର ତାହାର ପୁନରାବୃତ୍ତି କରିବା ଉଚିତ, କାରଣ କେବଳ ଧୀରେ ଧୀରେ ପ୍ରତ୍ୟେକ ବିଷୟ ତାଙ୍କ ମସ୍ତିଷ୍କରେ ପ୍ରବେଶ କରିଥାଏ ।



ଭଗବତ ସାନ୍ନିଧ୍ୟହିଁ ଜୀବନକୁ ମୂଲ୍ୟ ଦାନ କରେ । ଏହି ସାନ୍ନିଧ୍ୟହିଁ ସକଳ ଶାନ୍ତି, ସକଳ ଆନନ୍ଦ ଓ ସକଳ ନିରାପତ୍ତାର ଉତ୍ସ । ଏହି ସାନ୍ନିଧ୍ୟକୁ ତୋ ମଧ୍ୟରେ ଆବିଷ୍କାର କର, ସକଳ ଦୁଃଖକଷ୍ଟ ଅନ୍ତର୍ହିତ ହେବ ।

*
* *

ଯେ ଭଗବାନଙ୍କଠାରେ ବିଶ୍ୱାସ ସ୍ଥାପନ କରେ ସେ କେବେବି ଭଗବାନଙ୍କର ପ୍ରେମା-ପ୍ଳୁତ ବାହୁର ଆଶ୍ରୟରୁ ବଞ୍ଚିତ ହୁଏ ନାହିଁ, ତାହାର ଶରୀର ଯେଉଁଠି ଥାଉ ନା କାହିଁକି ।

—ଶ୍ରୀମା

ଶ୍ରୀଅରବିନ୍ଦ ଲୋକ-ସାହିତ୍ୟ—( ୩୭-୪୦ )

ମୂଲ୍ୟ : ଦୁଇଟଙ୍କା